# ଯୁଗବନ୍ଧୁ ଶରଣ



୰ ମଣିଚରଣ ମହାପାତ୍ର

# ପ୍ରଜପଷୁ ଧରସ



୰ ମଣିଚରଣ ମହାପାତ୍ର



৺ ମହିଚରଣ ମହାପାତ୍ର

ଜନ୍ମସ୍ଥାନ—ଶିବପୁର, ପୋଷ୍ଟେ, ଟାଟକଣ୍ଡ ।

ଜନ୍ମ—୨୮ । ୧୦ । ୧୮୫୭ ମସିହା     ମୃତ୍ୟୁ—୧୬ । ୯ । ୧୯୨୦ ମସିହା ।

# ଉତ୍ସର୍ଗପତ୍ର



**ଶ୍ରୀଯୁକ୍ତ ବାବୁ ବୈକୁଣ୍ଠନାଥ ଦତ୍ତ**

ବି. ଏଲ୍., କର-କମଳେଷୁ

ପ୍ରିୟ ବୈକୁଣ୍ଠ !

ସୁଧାମୟ ସ୍ନେହ ଓ ଉଦ୍ଦୀପ୍ତ ମମତାପୂର୍ଣ୍ଣ ଯେଉଁ ସମ୍ବନ୍ଧସୂତ୍ର ମୋର କୈଶୋର ସମୟଠାରୁ ଏପର୍ଯ୍ୟନ୍ତ ମୋତେ ତୁମ୍ଭ ସହିତ ଦୃଢ଼ରୂପେ ବନ୍ଧନ କରି ରଖିଅଛି, ସେହି ସମ୍ବନ୍ଧସୂତ୍ରକୁ ଚିରସ୍ମରଣୀୟ କରିବା ସକାଶେ ଏହି ସାମାନ୍ୟ ପୁସ୍ତକଖଣ୍ଡି ରଚନା କରି ଅଦ୍ୟ ତୁମ୍ଭ ହସ୍ତରେ ସମର୍ପଣ କଲି । ତୁମ୍ଭେ ଏହି ପୁସ୍ତକଖଣ୍ଡି ସାଦରରେ ଗ୍ରହଣ କଲେ ନିଜ ଶ୍ରମ ସାର୍ଥକ ଜ୍ଞାନ କରିବି ।

ଜଗତ୍‌ପିତା ଶ୍ରୀ ପରମେଶ୍ୱରଙ୍କଠାରେ ମୁଁ ପ୍ରାର୍ଥନା କରୁଅଛି ଯେ, ଉପରୋକ୍ତ ସମ୍ବନ୍ଧସୂତ୍ର ମୋର ଜୀବନ ସହିତ ଶେଷ ନ ହୋଇ ମୋର ସନ୍ତାନସନ୍ତତି-ମାନଙ୍କୁ ତୁମ୍ଭ ସନ୍ତାନସନ୍ତତିମାନଙ୍କ ସହିତ ଚିରକାଳ ବନ୍ଧନ କରି ରଖୁ । ଇତି ।

୨୫ ତାରିଖ ଡିସମ୍ବର
ସନ ୧୯୦୦ ମସିହା

ତୁମ୍ଭର
ଶ୍ରୀ ମଣିଚରଣ ଦାସ ମହାପାତ୍ର ।

# ପରିଚୟ



ଏହି "ବ୍ରଜବନ୍ଧୁ ବିରହ" ଖଣ୍ଡିଏ ନୂତନ ଧରଣର କବିତା ପୁସ୍ତକ । ଏଥିରେ ପ୍ରାଚୀନତ୍ୱ ଓ ନୂତନତ୍ୱର ସମାବେଶ ସୁନ୍ଦରରୂପେ ହୋଇଅଛି । ପ୍ରକାଶତଃ ରାଧାକୃଷ୍ଣଙ୍କ ବିରହବିଷୟକ ନବକଳ୍ପନା-ପ୍ରସୂତ ଭାବରତ୍ନମାନ ପ୍ରାଚୀନ ଛନ୍ଦରାଗସୂତ୍ରରେ ଏପରି ଭାବରେ ଗ୍ରଥିତ ହୋଇଅଛି ଯେ, କି ପ୍ରାଚୀନ କି ଆଧୁନିକ ଉଭୟଶ୍ରେଣୀର ଲୋକମାନେ ପରିଦର୍ଶନ ମାତ୍ରକେ ଏହାକୁ କଣ୍ଠହାର କରିବାକୁ ଇଚ୍ଛା ବଳାଇବେ । ଏଥିରେ ପ୍ରେମ, ଭକ୍ତି, ବାତ୍ସଲ୍ୟ ଓ ବୀରତ୍ୱର ଚିତ୍ରମାନ ସ୍ପଷ୍ଟରୂପେ ଚିତ୍ରିତ ହୋଇଥିବାରୁ ପ୍ରେମିକ ଭକ୍ତମାନଙ୍କୁ ଏହା ଯେ ବିଶେଷ ଆନନ୍ଦ ପ୍ରଦାନ କରିବ ଏବଂ ପ୍ରାଚୀନକାବ୍ୟପ୍ରିୟ ଲୋକ-ମାନଙ୍କର ନବରଚିତ କାବ୍ୟପ୍ରତି ଯେ ଆଗ୍ରହ ବଢ଼ାଇବ ଏଥିରେ ଅତ୍ର ସନ୍ଦେହ ନାହିଁ ।

ଏଥିର ରଚକ ଶିକ୍ଷାବିଭାଗର ଜଣେ ଉଚ୍ଚପଦସ୍ଥ ପରିଦର୍ଶକ କର୍ମଚାରୀ ଏବଂ ଆଧୁନିକ ଶିକ୍ଷାପ୍ରାପ୍ତ ମାର୍ଜିତରୁଚିର ଲୋକ । ସେ ପ୍ରଥମ ଉଦ୍ୟମରେ ଉତ୍କଳଭାରତୀର ସେବାରେ ଯେ ପ୍ରକାର କୃତକାର୍ଯ୍ୟ ହୋଇଅଛନ୍ତି ତାହା ପ୍ରଶଂସାର ବିଷୟ ଅଟେ । ଗ୍ରାହକ-ମାନେ ଯଥୋଚିତ ଆଗ୍ରହ ପ୍ରକାଶ କଲେ ସେ ଆପଣାର ପରିଶ୍ରମକୁ ସାର୍ଥକ ଜ୍ଞାନ କରିବେ ଏବଂ ଉତ୍ସାହିତ ହୋଇ କ୍ରମେ ଅନ୍ୟାନ୍ୟ ପୁସ୍ତକ ଲେଖିବାକୁ ଯତ୍ନବାନ୍ ହେବେ । ଇତି ।

୧ । ୧ । ୦୪
ବଙ୍ଗଦ



ଶ୍ରୀ ଅଭିନ୍ନ ନାୟକ
ମେନେଜର, ଜଗଦୀଶ ପ୍ରେସ



# ସୂ ଚି ପ ତ୍ର

| ଛାନ୍ଦ | ବିଷୟ | ପୃଷ୍ଠା |
|---|---|---|

# ଓଁ ତତ୍ ସତ୍ ଓଁ



ରାଗ—କାମ୍ବୋଦୀ, ତାଳ—ଝମ୍ପା

ଶରଦବରଣି ! ବାଣି ! ଶୁଭ୍ରବର୍ଣ୍ଣବସନେ !
ବୀଣାବାଦ୍ୟବିନୋଦିନି ! କମଳଶ୍ରୀବଦନେ !
ଧବଳବନଜାସନା ! ବିଶ୍ୱମ୍ଭରବନ୍ଦିତେ !
ବିଦ୍ୟାବୁଦ୍ଧିବିଧାୟିନି ! ବୃନ୍ଦାରକବନ୍ଦିତେ !
ବ୍ରଜବନ୍ଧୁବିଚ୍ଛେଦର ଦୁଃଖବାକୁ ବର୍ଣ୍ଣନା,
ବରଦେ ! ବଳିଛି ବର-ବାଳକର ବାସନା ।
ବିତର ବାଗ୍-ବିଭୂ ବିଦ୍ୟେ ! ବାଗ୍‌ବିଭବବିଧାନେ,
ବଳବଧୂ ବିଧିବେଳେ ବିତରନ୍ତି ବିପିନେ;
ବାନ୍ଧପଡ଼ା ବାଳମିତ୍ରେ ବାତ୍ସଲ୍ୟ ବହୁଳ,
ବିପଳ ବିଳମ୍ବ ବିନା ବିଦଗଧ ବିହ୍ୱଳ ।
ବ୍ରଜବନ୍ଧୁ-ବ୍ରଜବଧୂ-ବଜ୍ରବାଳ ବିଚ୍ଛେଦ,
ବିତରୁ ବିରହ ବିନା ବୁଧବର୍ଗେ ବିନୋଦ;
ବିଚ୍ଛେଦବର୍ଣ୍ଣନା ବିହୁ ବିନୋଦନ ବିସ୍ତାର,
ବୈପରୀତ୍ୟ ବୋଲି ବିଦ୍ୟେ ! ବାରେ ଗୋ ନ ବିଚାର;
ବୀକ୍ଷ ବିଶ୍ୱେ ବିଶାଳାକ୍ଷି ! ବୈପରୀତ୍ୟ ବିବିଧ,
ବିରକ୍ତେ ବିତାପ-ବାରି ବକ୍ରବାହ୍ନି ବାରିଦ;
ବିଶେଷେ ବାରିଧି-ବକ୍ଷ ବାଡ଼ବାଗ୍ନି ବିଦାରେ,
ବିଧୁରସ ବିଷ ବସେ ବ୍ୟାଳବର ବିବରେ ।





# ବ୍ରଜବନ୍ଧୁ ବିରହ

## ପ୍ରଥମ ଛାନ୍ଦ

ରାଗ—ଦେଶାକ୍ଷ ବା ଗୁର୍ଜ୍ଜରୀ *

### କଂସର କୃଷ୍ଣବଧ ଚିନ୍ତା

ଦିନେ ମନେ ପୂତନାଦି ଗଣାଣ, ଝୁରି ଝୁରିଲା କଂସ ପାପ ଜୀବ
"ମୋ ଗର୍ବଗଡବ୍ୟାଧି ନନ୍ଦବାଳ, ସେ ଥିଲେ ନୋହୁବ ମୋର ମଙ୍ଗଳ,
ମାଧବ, ତାଙ୍କୁ କୃପାଏ କର
ତେ ହୋଇଛୁ ସୁଖୀ ରକ୍ଷିଣ ଅରି । ୧
ବକାଦିଙ୍କି ସେହୁ ସଂହାର କଲା, ବହୁରଭ ପୂତେ ଗୋପନଗରୀ
ପ୍ରତାପୀ ବୀର ଷଣ୍ଢ ଅଘ ବକ, ବୀରଦର୍ପେ ଭ୍ରମୁଥିଲେ ତ୍ରିଲୋକ,
ତାଙ୍କୁ ସେ, କଲା ସହଜେ ହତ ।
ଏଡ଼େ କି ବଳୀ ନନ୍ଦ ବାଳସୁତ । ୨
ବାହୁବଳେ କଲା ନିପାତ କପ୍ସ, ପେଲ୍ଲିଥାଇ ମୋତେ ଲାଗୁଛି ଭୟ,
ଶୁଣିଲି ଦିନେ ସେ ଗୋପନଗରେ, ଗୋବର୍ଦ୍ଧନଗିରି ଟେକିଲା କରେ,
ପୂତନା, ପ୍ରାଣ କଲା ଶୋଷଣ,
କଲା ତାଳିସ୍କନ୍ଧୁ ବାସ ଉଚ୍ଛନ୍ନ । ୩

---

*ରସକଲ୍ଲୋଳ "କୃଷ୍ଣ ବାଳଲୀଳା" ସ୍ୱରେ

ତାହାର ଭୟରେ ନିଶି ଦିବସ,   ନିଦ୍ରା ନ କରେ ମୋ ନେତ୍ରେ ପ୍ରବେଶ,
ତାର କଥା ଶୁଣି ହୃଦ୍ବା ଚମକେ,   ଯେସନେ ନିକଟେ ଦେଖି ଅନ୍ତକେ,
ଭରଥ, କିସ ବୁଦ୍ଧି ନ ଦିଶେ
କି ଉପାୟ ଅଛି ତାର ବିନାଶେ ।” ୪
ଶୁଣିଣ ଏମନ୍ତ ମଥୁରାପତି,   ପାତ୍ର ମିତ୍ରଗଣେ ଡ଼କାଇ ଦ୍ରୁତ,
କହିଲ, “ସକଳେ ଦେଇ ଶ୍ରବଣ,   ଏକମନେ ଶୁଣ ମୋର ବଚନ,
ଅଦ୍ଭୁତ, ମୋର ନନ୍ଦତନୟ
କରେ ସେ ରାଜ୍ୟେ ନାନା ଅପଚୟ । ୫
ଅତି ଶୈଶବେ ପୂତନା ପ୍ରାଣ,   କ୍ଷୀର ସଙ୍ଗରେ ସେ କଲା ଶୋଷଣ,
ପୁଣି ଅଘାଦିଙ୍କ ସଂହାର କଲା,   ରକ୍ଷୀ ମାରି ତାଳଫଳ ଭକ୍ଷିଲା,
ଗୋପରେ, କରେ ସେ ଅତ୍ୟାଚାର
ଦଧି ଦୁଗ୍ଧ ଚୁରି କରେ ଅପାର । ୬
ଗୋପୀଙ୍କି ମୋହି ନନ୍ଦସୁତ କହ୍ନା,   ଛଡ଼ାଇଛି ତାଙ୍କ ଗୃହବାସନା,
ନାନା ରାଜନୀତି ସମାଜନୀତି,   ଭାଙ୍ଗେ ଦମ୍ଭେ ନୃପେ ନ କରି ଭୀତି,
ସାଧିଲା, ଧାଷ୍ଟ ରାଜାଙ୍କ ବିନା
ଲଙ୍ଘେ ରାଜାଜ୍ଞା ରାଜଦ୍ରୋହୀ ସିନା । ୭
ନ ସାଧିଲେ ନନ୍ଦସୁତ ବିନାଶ,   ନ ଲଭିବ ଶାନ୍ତି ମୋର ମାନସ,
ତା ନାଶେ ହେବ ଗୋପପୁର ସ୍ଥିର,   ରାଜ୍ୟ ଶାନ୍ତିରକ୍ଷା ଧର୍ମ ରାଜାର,
ରଖିବା, ରାଜ୍ୟେ ରାଜବିଦ୍ରୋହୀ
ଶାସନ ବିଧି ବିରୁଦ୍ଧ ଅଟଇ ।” ୮
କହେ ଉଗ୍ରସେନ, “ଶୁଣ ହେ କଂସ,   ସହଜ ନହେ ନନ୍ଦସୁତ ଧ୍ୱଂସ,
ବୃଥାରେ କେତେ ନ କଲ ଉପାୟ,   ନାଶିବାକୁ ବ୍ରଜପତି ତନୟ,
କୁଟିଳା, ଧାତ୍ରୀ ହୋଇ ପୂତନା
ମାରୁଁ ତାହାକୁ ନିଜେ ମଲା ସିନା । ୯
ସାଧିବାକୁ କୃଷ୍ଣ ପ୍ରାଣ ବିୟୋଗ,   କଲ ତ ପୂତନା ଆଦି ନିୟୋଗ,
ଗଲେ ସେମାନେ ମହାଦର୍ପ କରି,   ଜଣେ ତ ନଇଲ ଗୋପରୁ ଫେରି,

ସାମାନ୍ୟ, ନୁହେ ନନ୍ଦତନୟ,
ଅପେୟ କାଳିନ୍ଦୀ ଜଳକୁ ପେୟ । ୧୦
ଚୂରିଲା ଗୁରୁଦର୍ପ ବାସବର, ଟେକି ବାମକରେ ଗୁରୁ ଭୂଧର,
ଗ୍ରାସ କଲା ବନେ ପ୍ରବଳାନଳ, ଇଷିତରେ ନନ୍ଦରାଜା ଦୁଲାଳ,
ଅଦ୍ଭୁତ, ଏତେ ତାନି ଭୁବନେ,
ଶୁଣା ତ ନାହିଁ ଭୂତ ବର୍ତ୍ତମାନେ ।" ୧୧
କ୍ରୋଧେ ଗର୍ଜି ରଦଛଦ କାମୋଡ଼ି, ପିଧାନରୁ ତୀକ୍ଷ୍ଣ ଖଡ଼ଗ କାଢ଼ି,
କମ୍ପମାନ ଅଙ୍ଗେ କହିଲା କଂସ, ଆରକ୍ତ ନେତ୍ରେ ଗ୍ରହି ଦଶନ ଦଶ,
"ସାମାନ୍ୟ, ନର ନନ୍ଦର ଶିଶୁ,
ମୋ ଆଗେ ଗାଉଛୁ ତାହାର ଯଶ । ୧୨
ସିଂହର ଛାମୁରେ ଶୃଗାଳ ଖ୍ୟାତ, ଯେ ଜନ କରଇ ସେ ମୂଢ଼ ଅତ;
ଏକ୍ଷଣି ଯାଇ ମୁଁ ଗୋପନଗର, ଛେଦିବି ମନ୍ଦ ନନ୍ଦସୁତ ଶିର,
ଦେଖିବ, ତାର କେତେ ଶକତ,
ଶ୍ୱାନ ଆଗେ କି ସିଂହ କରେ ଭୀତ ? ୧୩
ନନ୍ଦର ତନୟ ଅଟେ ବାଳକ, ବାଳବଧେ ହୁଏ ଗୁରୁପାତକ,
ତେଣୁ ସେ ଏଯାଏ ରହିଛି ପ୍ରାଣେ, ଆଜ ତାହାକୁ ବଧିବି କୃପାଣେ,
ଅବ୍ରତ, ମୋର ନନ୍ଦର ସୁତ,
ଅବ୍ରତବନାଶ ଧର୍ମସଙ୍ଗତ ।" ୧୪
ଯମଘଣ୍ଟ * ଶୁଣି କଂସ ବଚନ, କରି ବଦନେ ରଦନ ଘର୍ଷଣ;
କହିଲା ,"ନରେଶ ! ଥାଉଁ ଏ ଭୃତ୍ୟ, ତୁମ୍ଭର ଗୋପେ ଯିବା ଅନୁଚିତ,
ମୁଁ ଆଜ, ବ୍ରଜେ ଗମନ କରି,
ନନ୍ଦସୁତକୁ ଆଣିଦେବି ଧରି ।" ୧୫
ତାର ବଚନେ କଂସ ହସ ହସ, ଘନେ କି ବକାଳୀଛବି ପ୍ରକାଶ,
କହିଲା, "ତୁରି ଯାଇ ଗୋପଦେଶ, ନନ୍ଦସୁତକୁ ବାନ୍ଧି ନେଇ ଆସ,

* କଂସର ଜଣେ ସେନାପତି

ଅସଢ-ରକ୍ତ-ପିପାସୁ ଅଟି,
ମୋର ହୋଇଛି ଅତ୍ୟନ୍ତ ପିପାସୀ ।” ୧୬
ଯୋଡ଼ି ବେନି କର କହେ ଅକ୍ରୂର, “ନ କର ମଣିମା ! ଏ କଦାଗ୍ରହ,
ଫସାରେ ରଚିବ ନିନ୍ଦା ଅପାର, ଜାଣିଲ ଗୋପବାଳେ କଂସାସୁର,
କହିବେ, ହସି ଦେବ ମାନବ,
ହେବ ଲଘୁ ତବ ବୀରଗୌରବ । ୧୭
ଛଦ୍ମେ କର ଧନୁରୁତ୍ସବ ଭିଆଣ, ତନପୁରକୁ ଦେବା ନିମନ୍ତ୍ରଣ,
ପର୍ବବ୍ୟାଜେ ଆଣି ନନ୍ଦନନ୍ଦନ, କପଟେ ଘେନିବା ତାର ଜୀବନ,
ତହିଁରେ, ନିନ୍ଦା ନ ହେବ ଲେଶ,
ଗୁପତେ ସାଧିତ ହେବ ଉଦ୍ଦେଶ୍ୟ । ୧୮
ଧନୁରୁତ୍ସବପୁର ପ୍ରଥମଦ୍ୱାରେ, ରଖାଇବା ମତ୍ତମାତଙ୍ଗବରେ,
ତହିଁ ନନ୍ଦସୁତେ ଯାଅନ୍ତେ ମିଳି, ନିଷ୍ପେଷି ଦେବ ମାତଙ୍ଗକୁ ଗୃଳି,
ସହଜେ, ତବ ଭୀମ କୁଞ୍ଜର
ଘେନିବ ପ୍ରାଣ ନନ୍ଦସୁତଙ୍କର । ୧୯
ଭାଗ୍ୟବଳେ ତହିଁ ଗଲେ ଉବୁର, ଦ୍ୱିତୀୟଦ୍ୱାରେ ମଲ୍ଲେ ମେଳକର,
ରଚି ମଲ୍ଲକ୍ରୀଡ଼ା ତାହାଙ୍କ ସଙ୍ଗେ, ନାଶିବେ ତାଙ୍କ ପ୍ରାଣ କ୍ରୀଡ଼ାରଙ୍ଗେ,
ମଲ୍ଲଙ୍କୁ, ବଳି ନାହିଁ ତ ବଳୀ
ଗୋପ ପିଲାଟାକୁ ଦେବେ ସେ ଦଳି ।” ୨୦
ସଚିବ ବଚନେ ଲଭି ସନ୍ତୋଷ, କହିଲା ପ୍ରଫୁଲ୍ଲବଦନେ କଂସ,
“ସତ୍ୱର ଧନୁରୁତ୍ସବ ସମାଗ୍ରହ, ନିଜପୁର ମଧ୍ୟରେ କର ପ୍ରଚୁର,
ନିର୍ମିଣି, ରମ୍ୟ ଧନୁ ମନ୍ଦର
ମୋ ପଦଭକ୍ତ ସମାବେଶ କର । ୨୧
ଆପଣେ ଯାଇଣ ଗୋପଧାମକୁ, ଘେନି ଆସ ନନ୍ଦସୁତ ଶ୍ୟାମକୁ,
ଯଥା ବ୍ୟାଧ ଘେନି ପକ୍ଷିଶାବକ, ବାହୁଡ଼େ ଆବାସେ ବହୁ ପୁଲକ,
ତାହାକୁ, ପୁଣି ରନ୍ଧନଶାଳେ
ଦଗଧ କରିବ ଜଳନ୍ତାନଳେ ।” ୨୨

କଂସ ଆଜ୍ଞାମତେ ସମ୍ଭାର କରି,    ଗଲେ ଅକ୍ରୂର ରଥେ ଗୋପପୁରୀ,
ପଥେ ଯାଉଁ ଯାଉଁ ଭାଳିଲେ ମନେ,    "ଅଛି କଂସ ତ୍ରାସ ତ୍ରିଭୁବନେ,
ଜଗତ, ଏବେ ଅତି କାତର,
ସହି ନ ପାରି କଂସ ଅତ୍ୟାଚାର । ୨୩
ରକ୍ଷକ ପାଳକ ଏ ଜଗତର,    ଅଛନ୍ତି ସିନା ପ୍ରଭୁ ଦାମୋଦର,
ଜଗତରକ୍ଷାର୍ଥ ପୁରୁଷୋତ୍ତମ,    ହୋଇଛନ୍ତି ଅବା ଗୋପେ ଜନମ,
ନୋହିଲେ, ଏଡ଼େ ଅଦ୍ଭୁତମାନ,
କରି ପାରଇ କି ଇତରଜନ । ୨୪
ପ୍ରକୃତି ରଞ୍ଜନ କରିବା ପାଇଁ,    ନୃପତିବର୍ଗର ସୃଷ୍ଟି ଅଟଇ,
ନିଜ ଧର୍ମ ନ ପାଳିଲେ ଭୂପତି,    ଭୋଗ ସେ କରଇ ଅପାର ଶାସ୍ତି,
ଯେସନେ, ନିଜ ଧର୍ମ ନ ପାଳି,
ପ୍ରଭୁ କୋପେ ଭୃତ୍ୟ ମରଇ ଜଳି । ୨୫
ଅଧର୍ମୀ ରାଜାର ହେଲେ ସଚିବ,    ନଷ୍ଟ ହୁଏ ଧର୍ମ ଯଶ ଗୌରବ,
ଜୀବାନ୍ତେ ନରକେ ହୁଏ ତା ବାସ, ରାଜା ଦୁର୍ଗତିର ଭୁଞ୍ଜେ ସେ ଅଂଶ,
ଯେସନେ, କର୍ମକାର ପ୍ରହାର,
ସହେ ଧାତୁର ସଙ୍ଗେ ବୈଶ୍ୱାନର । ୨୬
ଯେ ମନ୍ତ୍ରୀ ନୃପତି ତୁଷ୍ଟି କାରଣ,    ଅସତ୍ୟ ମନ୍ଦ ମନ୍ତ୍ର କରେ ଦାନ,
କେ ଅଛି ନାରକୀ ତାର ସମାନ, ମିଥ୍ୟା ଚାଟୁବାଦୀ ଅଟେ ସେ ଜନ,
ସୁମନ୍ତ୍ର, ତୁଚ୍ଛ କରେ ଯେ ନୃପ,
ଇହ ପରକାଳେ ଭୁଞ୍ଜେ ସେ ତାପ । ୨୭
ନ ଦେଲେ କେତେ ବା ସଦୁପଦେଶ, ଗୋଟିଏ ମାତ୍ର ନ ଘେନିଲେ କଂସ,
ପାଦେ ସେ ଖଟାଇ ରଖିଛି ଦେବେ, ନାହିଁ ତାର ଦୟା ଦେବ ମାନବେ,
ଦେବକୀ, ବସୁଦେବ ଏ ଦୁହେଁ,
ବିନା ଦୋଷେ ଛନ୍ତି ତା ବନ୍ଦୀଗୃହେ । ୨୮
ଅଜ କୃଷ୍ଣରେ ପଶିବି ଶରଣ,    ସେବିବି ତାଙ୍କ ଅଭୟ ଚରଣ,
ସେ ନାଶିବେ ମୋର ଦୁର୍ଗତି ଭୟ, ନାଶେ ତମକୁ ଯଥା ଚନ୍ଦ୍ରୋଦୟ,

ନିକଟେ, ହତ ହୋଇବ କଂସ,
ଅବନୀର ଦୁଃଖ ହେବଟି ଧ୍ୱଂସ ।" ୨୯
ଏମନ୍ତ ଭାଳିଁ ଭାଳିଁ କଂସଦୂତ, ଗୋପ ନଗରେ ହେଲା ଉପନୀତ,
ବୃକ୍ଷଚ୍ଛାୟାତଳେ ରଖିଣ ରଥ, ଗୋଷ୍ଠେ ଭ୍ରମିଲା ଲୋଡ଼ି ନନ୍ଦସୁତ,
ଭ୍ରମର, ଯଥା ଲୋଡ଼େ ମରନ୍ଦ,
ସୁଭାଗ୍ୟବଳେ ଭେଟିଲା ଗୋବିନ୍ଦ । ୩୦
ଦୋହନରତ ଗୋପବାଳ ମେଳେ, ଦେଖିଲା ନବଘନରୂପ ଡୋଳେ,
ପୀତବସନ ବେକାପୁଚ୍ଛ ଚଳ, ପଦ୍ମ-ନୟନ ରମ୍ୟ ବନମାଳ
ସହିତ, ନବ ଦ୍ୱିଗୁଣି ଚିହ୍ନ,
ଧ୍ୱଜ ବଜ୍ରାଙ୍କୁଶ ପତାକାମାନ । ୩୧
ଅନ୍ୟମାନେ ଚିହ୍ନି ନନ୍ଦ ଦୁଲାଳେ, ପ୍ରଣମି ଅକ୍ରୂର ଲୋଟିଲା ତଳେ,
ଉଠି ଉଭାହେଲା ଯୋଡ଼ିଣ କର, ତା ଦେଖି ଭକ୍ତପ୍ରିୟ ବଂଶୀଧର,
ପୁଚ୍ଛିଲେ, "କିସ ତୁମ୍ଭର ନାମ,
କିପାଇଁ ଆସିଅଛ ବ୍ରଜଧାମ ।" ୩୨
କୃଷ୍ଣ ବାଣୀ ଶୁଣି ଦୂତ କଂସର, କହିଲା, "ମୋ ନାମ ଅଟେ ଅକ୍ରୂର,
ତୁମ୍ଭଙ୍କୁ ନେବାକୁ ମଥୁରାଦେଶ, ମୋତେ ଛନ୍ତି ପେଷି ନୃପତି କଂସ,
ସେଠାରେ, ଦେଖି ଧନୁ ଉତ୍ସବ,
ପୁଣି ଗୋପପୁରେ ଫେରି ଆସିବ ।" ୩୩
ଅକ୍ରୂରଙ୍କୁ ହସି କହନ୍ତି ହରି, "ଶୁଣିଛୁ ଅତି ରମ୍ୟ ମଧୁପୁରୀ,
ଅଟେ ଅତି ଶୁଭ୍ର ରାଜମନ୍ଦିର, ସ୍ୱର୍ଗପୁରକୁ ବଳିଣ ରୁଚିର,
ଦେଖିବୁ, ବୋଲି ଶ୍ରଦ୍ଧା ଅଧିକ,
ଯିବା ଅନୁମତି ଦେଲେ ଜନକ । ୩୪
ମୋଠାରେ ଅକ୍ରୂର ! ସଦୟ ହୋଇ, ନନ୍ଦ ଯଶୋଦାଙ୍କୁ କହ ବୁଝାଇ,
ଅଥବା ଗର୍ଜନ ବଚନ କହି, ଅବା ତାଙ୍କ ଚିତ୍ତେ ଭୟ ଜନ୍ମାଇ,
ମଥୁରା, ମୋତେ ଘେନିଣ ଆଜ,
ଯିବାପାଇଁ ତ୍ୱରା ହୁଅ ହେ ସଜ ।" ୩୫

କଂସଦୂତ ଶୁଣି କୃଷ୍ଣ ବଚନ,    ପ୍ରବେଶିଲା ତ୍ୱରା ନନ୍ଦ ସଦନ,
କଂସ ଆଜ୍ଞା ପତ୍ର ନନ୍ଦକୁ ଦେଇ,    କହିଲା "ପୁତ୍ରଙ୍କୁ ଦିଅ ପଠାଇ,
ବାହୁଡ଼ି, ଆଜ ଯିବ ମଥୁରା,
ପୁତ୍ରଙ୍କୁ ସଜ କରାଅ ତ୍ୱରା ।" ୩୬
ନନ୍ଦ ପଢ଼ି କଂସ ଆଜ୍ଞା ପତ୍ରର, ବସି ପଡ଼ିଲା ଧରଣୀ ଉପର,
ଶିରେ ରଖି କର ଗୃହୁଁ ଧରଣୀ, ଶୋକେ ଅତି କଷ୍ଟେ ଉଚ୍ଚାରି ବାଣୀ,
କହିଲା, "ମୁହିଁ ଥାଉଁ ଜୀବିତ,
ମୋ ପୁତ୍ରେ ନିମନ୍ତ୍ରଣ ଅନୁଚିତ ।" ୩୭
ବସିଣ ଆସନେ କହେ ଅକ୍ରୂର, "ତୁମ୍ଭେ ନନ୍ଦ ! ଜଣେ ସାମାନ୍ୟ ନର,
କଂସର କୃପାରୁ ହେଲ ବ୍ରଜେଶ,    ଏବେ ବର୍ଣ୍ଣୁଅଛ କଂସର ଦୋଷ,
ଗରବ, ଏତେ କିପାଇଁ ନନ୍ଦ,
ସରିବ କ୍ଷଣକେ ତୁମ୍ଭ ସମ୍ପଦ ।" ୩୮
ଅକ୍ରୂର ବଚନେ ସଭୟ ବାଣୀ,    କହିଲା ନନ୍ଦ ଯୋଡ଼ି ବେନିପାଣି,
"ହେ ଦୂତ ମୁହିଁ ଅଟେ ବୃଦ୍ଧଗୋପ, ମୋ କଥାକୁ ଭଦ୍ର ! ନ କର କୋପ,
ବିଶ୍ରାମି, କର ଶ୍ରାନ୍ତିକି ଦୂର,
ଦୁଅ ଦୁଗ୍ଧ ଭୁଞ୍ଜି ଅଧାମ ସର । ୩୯
ନୃପତି ଆଜ୍ଞାକୁ ଅସ୍ତୁତ ନାହିଁ,    ପୁତ୍ରଙ୍କୁ ବହନ ଦେବି ପଠାଇ,
ତାହାଙ୍କ ସଙ୍ଗେ ଯିବ କଂସଧାମ,    ମୋର ଜୀବ ପରମ ରାମ ଶ୍ୟାମ,
ତାହାଙ୍କୁ, ଦୂର ଦେଶକୁ ପେଶି,
ମୁଁ ଗୋପପୁରେ କି ରହିବି ବସି ?" ୪୦
କହଇ ଅକ୍ରୂର, "ହେ ବ୍ରଜନାଥ !    ପୁତ୍ରଙ୍କୁ ଏତେ ସ୍ନେହ ଅନୁଚିତ,
ଅତ୍ୟନ୍ତ ସ୍ନେହର ଦୋଷ ଅପାର, ପୁତ୍ର ପାଶେ ପିତା ନ ରହେ ଚିର,
ନିଜର, ରକ୍ଷାକାର୍ଯ୍ୟେ ଶିକ୍ଷିତ,
ପୁତ୍ରେ କରିବା ପିତାର ଉଚିତ ।" ୪୧
ଅକ୍ରୂର ବଚନେ କହଇ ନନ୍ଦ,    "ଅଟନ୍ତି ଅତି ଶିଶୁ ମୋର ଗୋବିନ୍ଦ,
ସେ କେମେ ଶିଖିବ ସଂସାରନୀତି, ତା ଶିକ୍ଷା ବୟସେ ନାହିଁ ମୋ ପ୍ରୀତି ,

ଶୈଶବରୁଁ, କୃଷ୍ଣ ଭଳିଁରେ ପରି,
ନିଜ ରକ୍ଷା କଲ କେତେ ସଙ୍କଟୁଁ । ୪୨
ବୃନ୍ଦାବନେ ଦିନେ ଦୁର୍ବଳ ବକେ, ବିଦାରିଲ ତାକୁ ସୁତୀକ୍ଷ୍ଣ ନଖେ
ଏକ ଅଜଗର ଦିନେ ପ୍ରମତ୍ତ, କଲା ଶ୍ୟାମକୁ କରିବାକୁ ଗ୍ରାସ;
ଏରୂପେ, ଘୋର ବିପଦ ନାନା
ପାରିହେଲ ଶ୍ୟାମ ସାହାଯ୍ୟ ବିନା ।" ୪୩
ଶ୍ୟାମ କଥା ଶୁଣି ନନ୍ଦ ଅକ୍ରୂର, ଗଳ୍ପ କଲେ ବସି ନାନା ପ୍ରକାର
ଏକାଳେ ଆସି ଏକ ପରିଚାରୀ, ବିବିଧ ଦ୍ରବ୍ୟ ପାତ୍ର ପୂର୍ଣ୍ଣ କରି
ରଖିଲା, କଂସଦୂତ ଗୃହରେ,
ବିନୟେ କହିଲା, "ବସ ଆହାରେ ।" ୪୪
କଂସର ଉଚିତ ସାରି ଭୋଜନ, ରଥଅଶ୍ୱ ପାଶେ କଲା ଗମନ,
ବାଜି-ପୃଷ୍ଠ-କେଶ-ଲେଜ-ବାଳକେ, ବିଭାଜିତ କରି ତର୍ଜନବାକ୍ୟ,
ଅଶ୍ୱଙ୍କୁ, ଦେଇ ଭୋଜନ ପାନ,
ପଲଙ୍କେ ଦଣ୍ଡେ ସେ କଲା ଶୟନ । ୪୫
ଅକ୍ରୂରକୁ ଦେଖି ବ୍ରଜ ବାଳକେ, କଲେ ଗଳ୍ପ ହସିଣ କଉତୁକେ,
କେ କହେ "ଯେତେ କେଶ ତା ବଦନେ, ଥାନ୍ତା ଯଦି ତେତେ ବୃନ୍ଦାବନେ
ଗୋଧନ, ଯେତେ ଗୋପ ନଗରେ,
ଭାସାନ୍ତେ ଗୋପକୁ କ୍ଷୀର-ସାଗରେ ।" ୪୬
କେ କହେ, "କି ସ୍ଥୂଳ ତା ଅପଘନ, ସରି ନ ହେବ ଗିରି ଗୋବର୍ଦ୍ଧନ ।"
କେ କହେ, "ଭଲ୍ଲୁକ ପରି ଗର୍ଜନ, କରିଣ ମୋତେ ସେ କଲା ତର୍ଜନ,
ସ୍ଥୂଳାଙ୍ଗ, ବନ୍ଧୁ ନ ପାରେ ଧାଇଁ,
ତେଣୁ ମୋତେ ଧରି ପାରିଲା ନାହିଁ ।" ୪୭
କେ କହେ, "କେଡ଼େ ଗର୍ଭ ଅଛି ଧରି, ଦିଶଇ ଦୁର୍ଗର୍ଭା ନାରୀ ପରି ।"
କେ କହେ, "ଅଟେ ସେ କଲ୍ପଦ୍ରୁ ବାୟୁ, ତା ବସ୍ତ୍ର ବୁଣେ ଧନ୍ୟ ତନ୍ତୁବାୟୁ ।"
କେ କହେ, "କାସ କରି ଆହାର,
କରିଛି ଏଡ଼େ ସ୍ଥୂଳ ଦେହ ତାର ।" ୪୮

କେ ବୋଲେ,"ଦୂତ ଅଟେ ଲମ୍ବୋଦର, ଶୋଭିଭଣ୍ଡାର ତା ଲମ୍ବଉଦର,
ଦେଇ ନାହିଁ ବଧି ଗଜବଦନ,   ଦନ୍ତ ଗୋଟି ତାର ଗଜଗଞ୍ଜନ,
ଦେଖିଣ, ତାର ବରଣ୍ଠାଗତ,
ହେଲା ମୋ ହସ ଅସମ୍ଭାଳ ଅତ ।" ୭୯
କେ ବୋଲେ,"ସେ ଅଜା ସ୍ଥୂଳ ଉଦରେ, ରଖିଥାନ୍ତା ବ୍ରଜବାଳକଙ୍କରେ ।"
କେ କହେ,"ଭାଗ୍ୟେ ଅହିଲି ପଳାଇ, ଅଘ ପରି ଗିଳିଥାନ୍ତାରେ ଭାଇ ।"
କେ ବୋଲେ, 'ତାର ପେଟ ବଦାର,
ଶ୍ୟାମ ପରି ଅସିଥାନ୍ତୁ ବାହାର ।" ୮୦
କେ କହେ, "ଦୂତଟି ଅତ ବର୍ତ୍ତୁଳ, ବସିଲେ ଦିଶେ ଶାଳଗ୍ରାମ ତୁଲ,
ତାହାର ଗଭୀର ନାଭିଗହ୍ୱର, ଯଥା ଶାଳଗ୍ରାମ ମୁଖବିବର,
ସ୍କନ୍ଧରେ, ତାର ଯଜ୍ଞୋପବୀତ,
ହେମ-ରେଖା ପରି ହୁଏ ପ୍ରତୀତ ।" ୮୧
ଏମନ୍ତ କୁହାକୁହି ହୋଇ ବାଳେ, ପ୍ରବେଶିଲେ ଯାଇ ନନ୍ଦର ଅଳେ;
କୃଷ୍ଣ ଚରିତ ଅମୀୟ ପ୍ରବତ,   ପାନ କର ହୋଇ ପ୍ରଫୁଲ୍ଲଚିତ୍ତ,
ସୁଜନେ, ମନେ କର ସ୍ମରଣ,
ଦିବା ନିଶି ଚିନ୍ତାମଣି ଚରଣ । ୮୨

---

## ଦ୍ୱିତୀୟ ଛାନ୍ଦ

ରାଗ—ଧନାଶ୍ରୀ *

### କୃଷ୍ଣଙ୍କର ଆତ୍ମଚିନ୍ତା

ଅକ୍ରୂରଙ୍କୁ ଦେଇ   ମେଲାଣି ହରଷେ,   ମହାଯୋଗେଶ୍ୱର ହରି,
ଚିନ୍ତନ୍ତି ତରଳେ   ଯମୁନାର କୂଳେ   ନୀପମୂଳେ ବସି କରି,
"କାଲି ବ୍ରଜଭୁବନ,   ତେଜି ମଥୁରା ଯିବି ବହନ । ୧

* ବୈଦେହୀଶବିଳାସ "ବସେ ବଶିଷ୍ଠ ଜାବାଳ ବାମଦେବ" ରାଗେ

ଭକ୍ତଙ୍କ ବାସନା ପୂର୍ଣ୍ଣ କରିବାକୁ ହେଲି ମୁଁ ମର୍ତ୍ତ୍ୟେ ମାନବ,
ଭକ୍ତ ମୋର ପିତା ମାତା ଭ୍ରାଇ ବନ୍ଧୁ ଭକ୍ତ ପରମବାନ୍ଧବ,
ବ୍ରଜଧାମନିବାସୀ, ମୋର ପରମଭକ୍ତ ବିଶ୍ୱାସୀ । ୨

ପୂର୍ବେ ବହୁଜନ୍ମେ ପ୍ରେମମୟୂରଚିତ୍ତେ ସରଳଭକ୍ତିରେ ମତ୍ତ,
ଲଭିବାକୁ ମୋତେ ଏକାନ୍ତ ମାନସେ ନିର୍ବାଣମୁକ୍ତି ବିରକ୍ତ,
ନାନା ଭାବ ମନାସି, ମୋତେ ସେବିଲେ ବିରଜବାସୀ । ୩

ତାହାଙ୍କ ବାସନା ପୂର୍ଣ୍ଣ କଲି ବ୍ରଜେ ରଚି ନାନା ଲୀଳାରଙ୍ଗ,
କାଳି ବ୍ରଜଲୀଳା ସାଙ୍ଗ ମୁଁ କରିବି ପରିହରି ତାଙ୍କ ସଙ୍ଗ,
ମହୀ ଅତି କାତର, ସହି ନ ପାରେ ଭାର ପାପର । ୪

ମୋର ମହାଶକ୍ତି ଜଗଦ୍ଧାତ୍ରୀ ଲକ୍ଷ୍ମୀ ସନାତନୀ ମହାମାୟା,
ମୋର ଭକ୍ତିବାଞ୍ଛା ପୂର୍ଣ୍ଣ କରିବାକୁ ଧରିଛନ୍ତି ନାରୀକାୟା
ବୃଷଭାନୁଜା ରୂପେ, ତାଙ୍କୁ ରଖିକରି ଯିବି ଗୋପେ । ୫

ଦୁଷ୍ଟ ରାଜନ୍ୟ ରାକ୍ଷସ ଅତ୍ୟାଚାରରେ ଜଗତ ଅତି ପୀଡ଼ିତ,
ତାହାର କାତର କନ୍ଦନେ ହେଉଛି ମୋର ଶ୍ରୁତି ବଧିରିତ,
ଧର୍ମ ବିଲୁପ୍ତ ଅଛି, ହୁଏ ସଞ୍ଚୟ ପାତକରାଶି । ୬

ସାଧୁ ପରିତ୍ରାଣ ଦୁଷ୍ଟ ବିନାଶନ ଧର୍ମ ସଂସ୍ଥାପନ କରି,
ନିଜ ଧାମେ ପୁଣି ଗମନ କରିବି ମର୍ତ୍ତ୍ୟଲୀଳା ପରିହରି,
ଏବେ ମଳିନ ଅତି, ଧର୍ମ ସମାଜ ଶାସନନୀତି । ୭

ଲୀଳାରଙ୍ଗେ ଦେଇ ନୀତିଶିକ୍ଷା ମର୍ତ୍ତ୍ୟେ ସାଧିବି ଜଗତହିତ;
ପାଣ୍ଡୁନନ୍ଦନଙ୍କ କରିଣ ମୋହର ଉଦ୍ଦେଶ କର୍ମ ନିମିତ୍ତ;
ଅବଲମ୍ବି ନିମିତ୍ତ, ହୁଏ ମୋର ଇଚ୍ଛା ସମ୍ପାଦିତ । ୮

ଦୁଷ୍ଟ ରାଜନ୍ୟ ମୁଁ ଧ୍ୱଂସ କରିବାକୁ କୁରୁକ୍ଷେତ୍ରମହାହବେ,
ମୋର ସଖାରୂପେ କରିଅଛି ଜନ୍ମ ବୀରେନ୍ଦ୍ର ପାଞ୍ଚପାଣ୍ଡବେ;
ଦୁଷ୍ଟ ମଗଧପତି, ବନ୍ଦୀ କରିଛି ବହୁ ନୃପତି । ୯

ଦେବତାଙ୍କ ପାପଫଳ ଭୋଗ ପାଇଁ   ଜନ୍ମ ହେଲା କଂସାସୁର,
ସ୍ୱପାତକଫଳ   ଭୁଞ୍ଜିଲେଣି ବହୁ   ମୋ ଭକ୍ତ ସକଳ ସୁର;
ବଧି ମଥୁରାପତି,   ଦେଶ ଦେବେ ଦଣ୍ଡରୁ ମୁକତି । ୧୦

ଭୃଗେ ନ ଶତ୍ରୁଘ୍ନ ଦେବେ ଦେଲେ ମୋତେ ପୂର୍ବେ ବ୍ରହ୍ମହତ୍ୟାଦୋଷ,
ଗୁରୁନିନ୍ଦା ପାପେ   ମର୍ତ୍ତ୍ୟେ ଜନ୍ମି ସେମାନେ   ଭୁଞ୍ଜିଲେ ଅପାର କ୍ଲେଶ;
ଭଲ ମନ୍ଦର ଜ୍ଞାନ,   ଅଟେ ସିନା ମୋ ମାୟା ବିଧାନ । ୧୧

ନାହିଁ ମୋର ପାପ-ପୁଣ୍ୟ, ମୁଁ ଅଟଇ   ନିର୍ଗୁଣ ବ୍ରହ୍ମ ସ୍ୱଭାବେ,
ଗୁଣମୟୀ ମାୟା   ରଚେ ସୃଷ୍ଟିଲୀଳା   ମୋ ସଙ୍ଗେ ମର୍ତ୍ତ୍ୟ ମୋ ଭାବେ,
ମାୟା ନୁହେ ସ୍ୱତନ୍ତ୍ର,   ମୁହିଁ ଯନ୍ତ୍ରୀ ମାୟା ସିନା ଯନ୍ତ୍ର । ୧୨

ମାୟାତୀତ ଯେଣୁ   ନିର୍ଗୁଣ ମୁଁ ତେଣୁ   ସୃଷ୍ଟି ଆଦ୍ୟେ ଧରେଁ ଗୁଣ,
ତ୍ରିଗୁଣରୂପିଣୀ   ସନାତନୀ ମାୟା   ପ୍ରକାଶିତ ହୁଏ ପୂର୍ଣ୍ଣ;
ବିମ୍ବ ସଦୃଶ ମାୟା,   ତହିଁ ବିଶ୍ୱ ସିନା ମୋର ଛାୟା । ୧୩

ମୋ ମାୟା ମୋଠାରୁ   ଅଭିନ୍ନ ଅଟଇ   ସ୍ୱମାୟାରେ ମୁଁ ବିହରି,
ବିଶ୍ୱରୂପେ ସିନା   ପ୍ରକାଶିତ ହୁଏଁ   ବିବିଧ ଆକୃତି ଧରି;
ସୃଷ୍ଟି ଲୟ କାରଣ,   ଅଟେ ମୋର ନିଦ୍ରା ଜାଗରଣ । ୧୪

ମୁହିଁ ଭୋଜ୍ୟ ଭୋକ୍ତା   ମୁହିଁ ଧ୍ୟେୟ ଧ୍ୟାତା   ମୁଁ ଅଟେ ଜଡ଼ ଚେତନ,
ମୁହିଁ ମିତ୍ର ଅରି   ହର୍ତ୍ତା ରକ୍ଷାକାରୀ   ମୁଁ ପିତା ମାତା ନନ୍ଦନ;
ଯେତେ ବିଭେଦଜ୍ଞାନ,   ସବୁ ମୋର ମାୟାକାର୍ଯ୍ୟମାନ । ୧୫

ନାହିଁ ଦୁଷ୍ଟ ଶିଷ୍ଟ   ଉତ୍କୃଷ୍ଟ ନିକୃଷ୍ଟ   ଏ ଜଗତେ ମିତ୍ର ଅରି,
ମୁଁ ନିଜ ସଙ୍ଗରେ   ଲୀଳାରଙ୍ଗ ରଚେଁ   ଜଗତରୂପକୁ ଧରି;
ବିଶ୍ୱେ ବିଭେଦଜ୍ଞାନ,   ଅଟେ ମୋ ଲୀଳାର ଉପାଦାନ । ୧୬

ନାହିଁ ମୋର ସ୍ନେହ   ତାହିଁରେ ଜଗତେ   ସ୍ନେହରୁ ମୋହ ସମ୍ଭବେ,
ସ୍ନେହରେ ମର୍ତ୍ତ୍ୟେ   ଭୁଞ୍ଜନ୍ତି ଅପାର   ଯନ୍ତ୍ରଣା ଭବେ ମାନବେ;
ସ୍ନେହେ ମର୍ତ୍ତ୍ୟେ ସିନା,   ବ୍ରଜ ସହିବ କଷ୍ଟ ମୋ ବିନା ।" ୧୭

ଏହିରୂପେ ହରି ଭାଳନ୍ତି ଯୋଗଧ୍ୟାନେ ଅସିଣ ବ୍ରଜକୁମାରେ,
ବିଳେକ ପ୍ରବେଶ ଖୋଜି ଖୋଜି ବନେ ପୀତବାସ ଯେଉଁଠାରେ,
ଧୀରେ କହିଲେ ବାଣୀ, "କପାଁ ଲୁଚି ବସ ବେଣୁପାଣି ? ୧୮

ଲଜ୍ଜା ପାଇ କି ହେ ! ବସିଛ ଏଠାରେ ବାଗୁଡ଼ିରେ ହାରି ଯାଇ ?
ଚାଲ ପୁଣି ଦେବୁଁ ଜିତାଇ ତୁମ୍ଭଙ୍କୁ ଦୁଃଖ ନ କର କହ୍ନାଇ;
ଭାଇ ! କଳାବଦନ, ବିନା ହେଉଛନ୍ତି ଅଧୀର ମନ । ୧୯

କହ୍ନାଇ ! ତୁମ୍ଭେ ତ ଇଚ୍ଛାରେ ହାରୁଛ ଅମ୍ଭେ କି ଯାଅନ୍ତୁ ବଳି,
ଅଳପରେ ଷଣ୍ଢ ଅଘ ବଧ କଲ କାଳିୟକୁ ଦେଲ ଦଳି ।"
ଶୁଣି ସଖାଙ୍କ ବାଣୀ, ଯୋଗ ତେଜିଲେ ଜଳଜପାଣି । ୨୦

ସଖାଙ୍କ ବଚନ ଶୁଣି ହସି ହସି କହନ୍ତି ନନ୍ଦଦୁଲାଳ,
"ମୋଠାରୁ ଅଧିକ ବଳିଷ୍ଠ ଯେତେକ ମୋ ସଖା ବରଜବାଳ;
ତାଙ୍କୁ ନ ପାରେ ଜିଣି, ନେଇଛନ୍ତି ସେ ମୋ ବଳ କିଣି । ୨୧

ଆଜି ନନ୍ଦପୁରେ ପଡ଼ିବ ଦାରୁଣ ବିପଦ ହେ ସଖାଗଣ,
ମଧୁପୁରେ ମୋତେ ନେବା ପାଇଁ କଂସ ଦୂତ କରନ୍ତି ପ୍ରେରଣ,
ତାହା ଯମୁନାକୂଳେ, ଭାବୁଥିଲି ଏକା ମନାକୁଳେ । ୨୨

ଚାଲ ଆଜି ସର୍ବେ ବୃନ୍ଦାବନ ତେଜି ଗୃହକୁ ଯିବା ବହନ,
ପାଇ ଏ ବାରତା ମୋର ପିତା ମାତା କରୁଥିବେ ତ କ୍ରନ୍ଦନ;"
ହରି କହି ଏମନ୍ତ, ହେଲେ ସଦନକୁ ପ୍ରତ୍ୟାଗତ । ୨୩

ବିରସବଦନେ ନନ୍ଦର ସଦନେ ପ୍ରବେଶିଣ ମାୟାଧର,
ପୁରବାସୀ ସଙ୍ଗେ ମିଳି ମାୟାରଙ୍ଗେ ଶୋକରେ ହେଲେ କାତର;
ବୁଧେ କର ସ୍ମରଣ, ଚିତ୍ତେ ଶ୍ରୀଚିନ୍ତାମଣି ଚରଣ । ୨୪

---

## ତୃତୀୟ ଛାନ୍ଦ

ରାଗ—ଚାମୋଦୀ *

## କୃଷ୍ଣଙ୍କର ବ୍ରଜରୁ ବିଦାୟ ଗ୍ରହଣ

ହୋଇ ଅତି ଉତ୍ପୂର ସଜାଡ଼ି ରଥ୍‌ବର ଅକ୍ରୂର ନନ୍ଦଙ୍କୁ ଡ଼କାଇ
କହିଲେ, "ହୋଇ ଶଙ୍କା କର ମୋତେ ଅବଜ୍ଞା ରାଜାଜ୍ଞା ଦେଉଛି ପଚାରି
ହେ ବ୍ରଜପତି !
କୁପିତ ହେଲେ ନୃପବର, ସରବ ସମ୍ପଦ ତୁମ୍ଭର
ଛାଡ଼ି ମନରୁ ଦମ୍ଭ ଦୁଇ ପୁତ୍ରଙ୍କୁ ଆମ୍ଭ ସଙ୍ଗରେ ପଠାଅ ସତ୍ୱର
ହେ ବ୍ରଜପତି !" ୧

କହେ କାତରେ ନନ୍ଦ "ବୃଥା କରୁଛ ଦ୍ୱନ୍ଦ୍ୱ ଗୋବିନ୍ଦ ଦେଲା ଯିବାପାଇଁ,
ଥାଉଁ ଶତେ ବଦେଳ ସ୍ୱପ୍ରାଣ କେଉଁ ଲୋକ ଘାତକଙ୍କରେ ସମର୍ପିଲ
ହେ କଂସଦୂତ !
ଶ୍ୟାମ ମୋ ସମ୍ପଦ ଜୀବନ, କଂସ ତା କରୁଛୁ ହରଣ,
ଅଜ କପିଁ ମୋ ମତି କରିବ କଂସେ ପ୍ରୀତି ଏବେ ମୋ ସୁଗତି ଶମନ
ହେ କଂସଦୂତ ! ୨

କପିଁଲ ନୃପବର ବାଳସୁତଙ୍କୁ ମୋର ଡ଼ଗର ପେଷିଛୁ ନେବାକୁ,
ମୁଁ ଅଟେ ଗୋପରାଣ ମୋଠାକୁ ନିମନ୍ତ୍ରଣ ପ୍ରେରଣ ନ କଲ ଯିବାକୁ
ହେ କଂସଦୂତ !
ମୋ ମନେ ଲାଗଇ ସନ୍ଦେହ, ଅକ୍ରୂର ସତ୍ୟ କରି କହ,
କପଟ ପାଞ୍ଚ କରୁ କଂସ ଅବା କରୁଛୁ ମୋ ସୁତେ ଅଜ୍ଞାନ ନିର୍ବାହ
ହେ କଂସଦୂତ ! ୩

ଦନେ କପଟୀ କଂସ ପଠାଇଲା ଅଦେଶ ସାରସ ଶତଦ୍ରାର ଲାଗି,
କରୁଁ ହ୍ରଦେ ଚମ୍ପକ ପଦ୍ମ ପଦ୍ମନୟନ ଦଂଶନ କଲା ମହାଭୋଗୀ
ହେ କଂସଦୂତ !

---

* ଉସବକଲ୍ଲୋଳ "କୃଷ୍ଣ କଂସନଗର ଯିବା ଶୁଣି କାତର" ସ୍ୱରେ

ଧର୍ମ ରକ୍ଷିଲ୍ଲ କହ୍ନା ପ୍ରାଣ, ନାହିଁ କଂସର ଧର୍ମଜ୍ଞାନ,
ଦେଖି ମୋର କ ଦୋଷ ମୋଠାରେ ସଦା ରୋଷ ପ୍ରକାଶ କରେ କଂସରାଣ
ହେ କଂସଦୂତ ! ୪

ବ୍ରଜଧାମ-ନୟନ ଅଟେ ପଦ୍ମନୟନ ଶୟନ ସ୍ୱପନେ ଯାହାକୁ,
କ୍ଷଣେହେଁ ଚକ୍ଷୁ ମୋର ତଳେ ନ କରେ ଦୂର କେମନ୍ତେ ଛାଡ଼ିବି ତାହାକୁ
ହେ କଂସଦୂତ !
ଯାଉ ପଛକେ ମୋ ଜୀବନ, ଯାଉ ମୋ ରାଜ୍ୟ ମାନ ଧନ,
ନ ଦେବ ଶ୍ୟାମେ ଛାଡ଼ି ଯାଅ ତୁମ୍ଭେ ବାହୁଡ଼ି ସତ୍ୱର ମଥୁରା ଭୁବନ
ହେ କଂସଦୂତ ! ୫ ।

ଯଦ ଇଚ୍ଛା ତୁମ୍ଭର ଘେନିଯିବ ନିକର ମୋର ଏ କୁମର ଯୁଗଳ,
ପ୍ରଥମେ ଅସି ଘେନି ନାଶ ଗୋପ ଗୋପିନୀ ବ୍ରଜରେ ଲଗାଅ ଅନଳ

ହେ କଂସଦୂତ !
ପଛରେ ମୋର କୃଷ୍ଣ ରାମ, ଘେନି ମଥୁରାପୁରେ ଗମ,
ମୋର ଗଳା କରତ ବନାଣି ଯଶୋମତୀ ଅରଜ ସୁଖ୍ୟାତ ପରମ
ହେ କଂସଦୂତ ! ୬ ।
ଶୁଣି ନନ୍ଦର କଥା ଅକ୍ରୂର ପାଇ ବ୍ୟଥା ବିଷଣ୍ଣବଦନେ ଅନାଇ,
କହିଲ, "ବୃଥା ନନ୍ଦ ହେଉଛ ନିରାନନ୍ଦ ଗୋବନ୍ଦେ ପଠାଇବା ପାଇଁ
ହେ ବ୍ରଜପତ !
ରାଜସଭାରେ ବସି କର, କହ୍ନାଇ ଶିଖିବେ ରାଜୁରା,
ଗୋପରେ ପ୍ରତିଦିନେ ଭ୍ରମିଲେ ବନେ ବନେ ଜନ୍ମତ ଲଭିବେ କପର
ହେ ବ୍ରଜପତ ! ୭

ଶିକ୍ଷାବିହୀନ ଜନ ସିନା ପଶୁ ସମାନ ବିଷାଣ ପୁଚ୍ଛହୀନ ମାତ୍ର,
ଅବିବେକ ସେ ଜନ ନ ହୁଅଇ ପତନ ସନ୍ତାନ ଶିକ୍ଷାରେ ଯା ନେତ୍ର

ହେ ବ୍ରଜପତ !

ଅତ୍ୟନ୍ତ ସ୍ନେହ ଅନୁରତ, ତାଡ଼ନେ ଗୁଣ ଅପ୍ରମିତ,
ବାଲ୍ୟେ ଗଲେ ବିଦେଶ ବଢ଼େ ଜ୍ଞାନ ବିଶେଷ ସାହସ ହୁଅଇ ବର୍ଦ୍ଧିତ,
ହେ ବ୍ରଜପତ ! ୮

ନାନା ସ୍ଥାନେ ଅଟନ ପଣ୍ଡିତେ ସମ୍ମିଳନ ପଠନ ନରବର ସଙ୍ଗ,
ଏଥିରେ ଶୁଚିସ୍ଥ ଜାତ ଏଥିରେ ଜ୍ଞାନ ବର୍ଦ୍ଧିତ ମାର୍ଜିତ କରଇ ପ୍ରତିଭା
ହେ ବ୍ରଜପତ !

ବନରେ ଭ୍ରମି ନିତ ନିତ ନିର୍ବୋଧ ଗୋପାଳେ ହୁଅନ୍ତି,
ବିଶୁଦ୍ଧ ଗୋପକୁଳ ତେଣୁ ହୋଇ ସମୂଳ ଲଭଇ ସମାଜ ଦୁର୍ଗତି;
ହେ ବ୍ରଜପତ ! ୯

ତୁମ୍ଭ ବେନି ନନ୍ଦନ ଘେନି ଅସ ବହନ ଶୋଭନଯୋଗକୁ ବର୍ତ୍ତର ।
ଲଙ୍ଘି ସବୁ ପ୍ରମାଦ ଲଭି ରାଜପ୍ରସାଦ ପ୍ରମୋଦେ ଅସିବେ ସେ ଫେରି

ହେ ବ୍ରଜପତ !

ଶରଧା ବଳାଛୁ କଂସର, ଦେଖିବା ଲଗି ଦାମୋଦର,
କଲେ କଂସରେ ପ୍ରୀତ ଦୂର ହେବ ଦୁର୍ଗତ ସମ୍ପତ୍ତି ବଢ଼ିବ ତୁମ୍ଭର;
ହେ ବ୍ରଜପତ !” ୧୦

ସାନ୍ତ୍ୱନା ଉପଦେଶ ପାଇଣ ଗୋକୁଳେଶ ପ୍ରବେଶ କରି ଅନ୍ତଃପୁରେ ।
ଯଶୋଦାଙ୍କୁ ଡକାଇ କହିଲେ ଗୋପସାଇଁ, “କହ୍ନାଇ ଯିବ ମଧୁପୁରେ
ଗୋ ପ୍ରିୟତମେ !

ତାହାଙ୍କୁ ଦ୍ରୁତ ସଜ କର, ଅଧୀର ହେଉଛୁ ଡ଼ଗର,
ଲଙ୍ଘିଲେ ରାଜାଦେଶ ଘଟିବ ସର୍ବନାଶ ବିଧ୍ୱଂସ ଘଟିବ ଗୋପର,
ଗୋ ପ୍ରିୟତମେ ! ୧୧

ଦେଖି ଧନୁଉତ୍ସବ ଗୃହ ଦିନେ କେଶବ ଅସିବ ଗୋପକୁ ବାହୁଡ଼ି,
ହେବ କଂସ ହରଷ ପାଇବ ପୀତବାସ ପୃଯଣ ଶିରେ ବାନ୍ଧି ଶାଢ଼ୀ
ଗୋ ପ୍ରିୟତମେ !

କୃଷ୍ଣଙ୍କୁ କୃପା କରି କଂସ, ଦେବ ଅନେକ ନଗ୍ର ଦେଶ,
ରାଜସଭା ପ୍ରବେଶେ ହେବ ଶ୍ୟାମ ବିଶେଷେ ଚତୁର ଲଭି ଉପଦେଶ
ଗୋ ପ୍ରିୟତମେ ! ୧୨

ଯଦି ଅମ୍ବ ତନୁଜେ ନ ଛାଡ଼ିବା ସହଜେ ବରଜେ ରଖିବା ବଳରେ,
ନୃପବଳରେ ବଳୀ ଡ଼ଗର କରି ଭଳି ହାବେଳି ଛାଡ଼ି* ଗୋକୁଳରେ
ଗୋ ପ୍ରିୟତମେ !

ସ୍ୱୟଂ ଶ୍ୟାମଙ୍କୁ ଯିବ ଘେନି, କୋପିବ କଂସ ଏହା ଶୁଣି,
ତା କ୍ରୋଧ ଅତି ଖର ସୁତଙ୍କୁ ଅବା ମୋର ଖଡ଼ଗେ ପକାଇବ ହାଣି,
ଗୋ ପ୍ରିୟତମେ ! ୧୩

ନନ୍ଦରାଜା ବଚନ ଇରମ୍ମଦ ପତନ ସମାନ ଯଶୋଦା ଶ୍ରୁତିରେ
ପଡ଼ି ବ୍ରଜମହିଷୀ ତଳେ ପଡ଼ିଲ ବସି ନିବେଶି ମୃତ୍ତିକ ଛାତିରେ
ହେ ବୁଧଜନ !

ନୀରବ ଘୋର ନେତ୍ରବାରି ଆର୍ଦ୍ରିଲ ମଧ୍ୟ ନେତ୍ରୁଁ ଝରି ,
ଶୂନ୍ୟ ହେଲାକ ମତି ନିଷ୍ପ୍ରଭ ନେତ୍ର ଶ୍ରୁତି ମୂରତି ମଣିମୟୀ ପରି ହେ,
ବୁଧଜନ ! ୧୪

ହେଉଁ ସ୍ୱାମ ବିନାଶ ଚେତା ହେଲା ପ୍ରବେଶ ମାନସ ପୂର୍ଣ୍ଣ ହେଲା ଭାବେ,
ଶୋକ-ଘୃଣା-ବିଷାଦ-ବୈରାଗ୍ୟ ଦମ୍ଭ-କ୍ରୋଧ-ବାରିଦ ସଞ୍ଚରି ନୀରବେ
ହେ ବୁଧଜନ !

ଯଶୋଦା ମାନସ-ଅମ୍ବରେ ଘୋଟିଲେ ଅତି ଭୟଙ୍କରେ,
ହେଲା ବାତ୍ୟା ପ୍ରକାଶ ଘନ ଦୀର୍ଘ ନିଶ୍ୱାସ ଶୋକାଶ୍ରୁ ଘନଧାର ଖରେ,
ହେ ବୁଧଜନ ! ୧୫

ଉଠି ବସି ମଉନେ ଯଶୋଦା ଭାଳେ ମନେ କି ଭାଳେ ଜାଣି ନ ପାରଇ,
ଉଚ୍ଚାରିବାକୁ ବଚ ମନରେ କରେ ପାଞ୍ଚ କହିବ କିସ ନ ଜାଣଇ
ହେ ବୁଧଜନ !

---

* ଅର୍ଥାତ୍ ସମସ୍ତଙ୍କୁ ଅସ୍ଥିର କରି

ଶୋକରେ ରୁଦ୍ଧ କଣ୍ଠଦେଶ ନ ଫିଟେ କଲେହେଁ ପ୍ରୟାସ,
ପ୍ରବଳ ସ୍ରୋତବାରି ସେତୁ ଭାଙ୍ଗିଲା ପରି ହେଲାକ ଶୋକର ପ୍ରକାଶ
ହେ ବୁଧଜନ ! ୧୬

କାନ୍ଦି ବ୍ୟାକୁଳ ମନେ ଗଦଗଦ ବଚନେ ବଦନେ ବାସାଞ୍ଚଳ ଦେଇ,
କହିଲେ ନନ୍ଦରାଣୀ "ଏଡ଼େ କଠିନ ବାଣୀ ମୋଠାରେ କହୁଛ କିପାଇଁ
ହେ ପ୍ରାଣେଶ୍ୱର !
ପାଷାଣେ ହୃଦୟ ତୁମ୍ଭର, ଅଛୁ କି ରତି ବେଦବର,
ହେଉଅଛ ଉଦ୍ୟତ ମୋ ବେନି ବାଳସୁତ ଦେବାକୁ ଦୁଷ୍ଟ କଂସ କର
ହେ ପ୍ରାଣେଶ୍ୱର ! ୧୭

କଠିନ ବ୍ରତ ଫଳେ ବେନି ସୁତଙ୍କୁ କୋଳେ କପାଳେ ଥିବାରୁ ପାଇଲି,
ଯାହାଙ୍କୁ କୋଳେ ଘେନି ବଞ୍ଚେ ଦିବାରଜନୀ ଯା ଘେନି ଦୁଃଖ ପାଶୋରିଲି
ହେ ପ୍ରାଣେଶ୍ୱର !

ଯାହାଙ୍କ ମୁଖ କମନୀୟ, ଦେଖି ଉଛୁଳେ ମୋ ହୃଦୟ,
କେମନ୍ତେ ଅଣି ତୁଣ୍ଡେ ବଜ୍ର ମାରି ମୋ ମୁଣ୍ଡେ ଦେବାକୁ ତାହାଙ୍କୁ ବିଦାୟ
ହେ ପ୍ରାଣେଶ୍ୱର ! ୧୮

ପାପୀ କଂସଡ଼ଗର ଭଣ୍ଡ ଅଟେ ଅକ୍ରୂର ଭଣ୍ଡର ଗୁରୁତ୍ୱ ପ୍ରକାଶି ।
ଭଣ୍ଡବଚନ କହି ତୁମ୍ଭ ମନକୁ ମୋହି ନେବ କି ମୋର କଲାଣି
ହେ ପ୍ରାଣେଶ୍ୱର !

ଯାବତ ଥିବ ମୋ ଜୀବନ, ଛାଡ଼ି ନ ଦେବି ଶ୍ୟାମଧନ,
ଅସି କ୍ରୂର ଅକ୍ରୂର କରୁ ମୋତେ ସଂହାର ଦେଖାଇ ତାର ବଡ଼ପଣ
ହେ ପ୍ରାଣେଶ୍ୱର ! ୧୯

ତୁମ୍ଭେ ରାଜା ଗୋପର କିପାଁ ମଥୁରାନଗର ଅକ୍ରୂର ସଙ୍ଗେ ନ ଯାଉଛ,
ନାହିଁ ତୁମ୍ଭ ସାହସ ଅଟ ଭୀରୁ ସଦୃଶ ବ୍ରଜେଶ କିପାଁ ବୋଲାଉଛ,
ହେ ପ୍ରାଣେଶ୍ୱର !

ଦୁଖିନୀଧନେ କଂସେ ଦେଲ, ହୋଇବ ପରି ଗୋପସାଇଁ,
କଂସର ନିମନ୍ତ୍ରଣ କର ଶିରେ ଧାରଣ ପ୍ରୟାଣ କର ତ୍ୱରା ହୋଇ
ହେ ପ୍ରାଣେଶ୍ୱର ! ୨୦

ଦୁଷ୍ଟ ରାଜଡ଼ଗର ମନ୍ଦ ଶଠ ଅକ୍ରୂର ସଙ୍ଗର ଧରୁ ଗୋପଦାଣ୍ଡ,
ନାଚୁବା ମୋର ମୁଣ୍ଡ କରୁ ସେ ଖଣ୍ଡ ଖଣ୍ଡ ଖଡ଼ଗ ପ୍ରହାର ପ୍ରଚଣ୍ଡ,
ହେ ପ୍ରାଣେଶ୍ୱର !

ମୋର ଗରସ୍ତୁ ଦୁଷ୍ଟ କଂସ, ଅଜ ସେ କରୁ ମୋତେ ଧ୍ୱଂସ,
ଦେଉ ମୋତେ ବନ୍ଧନ ବେଗେ ଅସି ଶମନ ମୋ ଶିରେ ବରଷ କୁଳିଶ
ହେ ବେଦବର ! ୨୧

ଦୁଃଖୀ ଜନର ଧନ କରିବା ସଂରକ୍ଷଣ ଅଟଇ ଧର୍ମ ନରେଶର,
ହୋଇ ନିଜେ ବ୍ରଜେଶ ନିଜ ଧର୍ମକୁ ନାଶ ପ୍ରାଣେଶ କି ଶତ୍ରୁରେ କର
ହେ ! ଏ ବ୍ରଜରେ

ଅଟଇ ମୁଁ ଅତି ଦୁଃଖିନୀ, ମୋ ଧନ ମାନ ସୁତ ବେନି,
ତାଙ୍କ ଉପର କରେ ମୋ ଧନେ କି ଶତ୍ରୁରେ ଦେଉଛ ତୁମ୍ଭେ ତ ସ୍ୱାମୀ
ହେ ପ୍ରାଣେଶ୍ୱର ! ୨୨

ମୋର କି କାର୍ଯ୍ୟ ଧନେ ରାଜସମ୍ପଦ ମାନେ ଜୀବନେ ମୋର କାର୍ଯ୍ୟ ନାହିଁ
କାହ୍ନୁ ମୋର ସକଳ ଧନ ମାନ ସମ୍ବଳ ଜୀବନ ମିତ୍ର ବନ୍ଧୁ ଭାଇ
ହେ ପ୍ରାଣେଶ୍ୱର !

ଯେତେ କାଳ ଏ ଭବେ ଥିବ, କେମନ୍ତେ ତାହାକୁ ତେଜିବ,
ତାର ଚନ୍ଦ୍ରବଦନ ସଦା କରି ଦର୍ଶନ ଜୀବନ ସାର୍ଥକ କରିବ
ହେ ପ୍ରାଣେଶ୍ୱର ! ୨୩

କୋଟି-କନ୍ଦର୍ପଜିଣା ରୂପେ ଅଛେ ମୋ କହ୍ନା ତାହାକୁ ଭୂଷଣ ବସନେ
ନିତ କରି ଭୂଷିତ ବାନ୍ଧିବି ତାର ମାଥ ଚର୍ଚ୍ଚିବି ଲଲାଟ ଚନ୍ଦନେ
ହେ ପ୍ରାଣେଶ୍ୱର !

କାହ୍ନୁ ମୋ ସଂସାର ବ୍ୟାପାର, କାହ୍ନୁ ମୋ ଜୀବନ ଅଧାର,
ତାହାଙ୍କୁ ନେଲେ ତାହାଙ୍କୁ ଦେଖି ତୋଳେ କାଟିବ ଜୀବନ ମୋହର
ହେ ପ୍ରାଣେଶ୍ୱର ! ୨୦

କଂସରେ ମିତ୍ରପଣ କର ଗୋପରେ ସୁଖ ହୋଇଣ ସୁଖେ ଗୃହେ ରହ
ନ ଲୋଡେଁ ମୁଁ ସମ୍ପଦ ନ ଲୋଡେଁ ସ୍ୱର୍ଗୀପଦ ନ ଲୋଡେଁ ଧବଳତ ଗୃହ
ହେ ପ୍ରାଣେଶ୍ୱର !

ମୋର କାହ୍ନୁଙ୍କୁ ନେଲେ କୋଳେ, ଭ୍ରମିବ ଅବନୀ ମଣ୍ଡଳେ,
ମୋ ଶ୍ରେୟ ହୀନାବାସ ମୋ ଶ୍ରେୟ ଛିନ୍ନବାସ ମୋ ଶ୍ରେୟ ଭିକ୍ଷା ଅରଣ୍ୟାଣୀ
ହେ ପ୍ରାଣେଶ୍ୱର ! ୨୫

ଅଜ ହେ ଗୋପରାୟ ଦିଅ ଗୃହଁ ବଦାୟ ସଦୟ ହୋଇ ଅଧିନୀକ,
ନ ନେବ ଘରୁ କିଛି ସତ୍ୟ କରି କହୁଛି କେବଳ ମୋ ବଂଶୀପାଣିଙ୍କ
ହେ ପ୍ରାଣେଶ୍ୱର !

ପଛକେ ମୋ ନେବ ନନ୍ଦନ, ଭିକ୍ଷାନ୍ନେ ପୋଷିବେ ଜୀବନ,
ତୁମ୍ଭେ ପ୍ରିୟ କଂସର ଅଜ ଗମନ କର ଅକ୍ରୂର ସଙ୍ଗରେ ବନ୍ଧନ
ହେ ପ୍ରାଣେଶ୍ୱର !" ୨୬

ମଜନେ ନନ୍ଦ ରହି ଯଶୋଦା ମୁଖ ଗୃହିଁ ନୀରବେ ଅଶ୍ରୁବାରି ଢ଼ାଳେ
ମାତା ବିଳାପଧ୍ୱନି ରଥାଙ୍ଗପାଣି ଶୁଣି ସେଠାରେ ପ୍ରବେଶି ତତ୍କାଳ
ହେ ବୁଧଜନ !

ବସିଲେ ଜନନୀର କୋଳେ, ନିଜ ନୟନ ନେତ୍ରଜଳେ,
ତ୍ୱସାଇ କଙ୍କେକ୍ଷଣ କହିଲେ "କି କାରଣ କ୍ରନ୍ଦନ କରୁଛ ଆକୁଳେ
ଗୋ ସ୍ନେହମୟି !" ୨୭

କରି ଶ୍ୟାମେ ଦର୍ଶନ ଶୁଣି ଶ୍ୟାମ ବଚନ, ଦ୍ୱିଗୁଣ ଯଶୋଦା ଶୋକିନୀ
ଗଣ୍ଡେ ଦେଇ ଚୁମ୍ବନ ପୋଛି ଶ୍ୟାମ ନୟନ ଦେଇଣ ଚିବୁକରେ ପାଣି
ସେ ସ୍ନେହଭରେ ,

କହୁଛ କାନ୍ଦନା କହ୍ନାଇଁ, ପୁଣି କହୁଛ ଚୁମ୍ବ ଦେଇ,
"ଆରେ ମୋ ପ୍ରାଣଧନ, କିପାଁ କରୁ କ୍ରନ୍ଦନ ନୟନ ଲୋତକେ ତିନ୍ତାଇ
ରେ ଦୁଃଖୀଧନ !" ୨୮

ଶୁଣି ମାତା ବଚନ କାନ୍ଦ ଖଞ୍ଜନନୟନ "କହନ୍ତୁ ମାତ ! କାନ୍ଦ କିପାଁ,
କହ କିପାଁ ଜନନୀ ବସି କରନ୍ତୁ ଶୋକ କି ଦୁଃଖ କହ କର କୃପା
ଗୋ ସ୍ନେହମୟି !
ଦେଖି ତୁମ୍ଭର ନେତ୍ରେ ନୀର, ହେଉଛି ମୋ ମନ ଅସ୍ଥିର,
ଅଧୀର ହୁଏ ମନ ଦେଖି ତୁମ୍ଭ କ୍ରନ୍ଦନ ଶୁଣିଣ ବିଳାପ ତୁମ୍ଭର
ଗୋ ସ୍ନେହମୟି ! ୨୯

ଶୁଣି ନନ୍ଦନ ବାଣୀ କାନ୍ଦ ବରଜରାଣୀ କହୁଲେ ଗଦଗଦ ସ୍ୱରେ,
"ଦଧି ଲବଣୀ ସର ଅଛି ଭୋଜନ କର ସତ୍ୱର ବସି ମୋ କୋଳରେ
ରେ ଘନଶ୍ୟାମ !

ରାମକୁ ଡାକି ଅଣ ଯାଇ, ଭୋଜନ କର ବେନି ଭାଇ,
ବନରେ ଭ୍ରମି ଭ୍ରମି ହୋଇଛ ଅତି ଶ୍ରମୀ ସବଳ ହୁଅ ସର ଖାଇ
ରେ ନୀଳମଣି ! ୩୦

ବହୁଛି ବନ୍ଧୁ ଝାଳ ଛିଡ଼ିଛି ବନମାଳ ସକଳ ଧୂଳିରେ ଶରୀର,
ମୟୂରପୁଚ୍ଛ ଚୂଳ ହୋଇଅଛି ଶିଥିଳ କି ଖେଳ ଖେଳିଲ ବନର
ରେ ନନ୍ଦଧନ !

ମୋ ବଳରାମ ଅଛି କାହିଁ, ତାହାକୁ ଘେନି ଆସ ଯାଇ,
କେତେକି ଖେଳ ଲଗି ଯିବ ଘରୁ ବାହାରି ଭୋଜନ ସାରି ବେନି ଭାଇ
ରେ କଳାଶଶି !" ୩୧

ଶୁଣି ଏମନ୍ତ ବାଣୀ କାନ୍ଦିଲେ ଜଟେ ରାଣୀ କାନ୍ଦିଲେ ନନ୍ଦ ଶୋକାକୁଳେ
ସେହିକ୍ଷଣେ ତହିଁ ମିଳି ଜଟେ କାନ୍ଦିଲେ ହଳୀ କାନ୍ଦିଲେ କୃଷ୍ଣ ମାତା କୋଳେ
ହେ ବୁଧଜନ !

ନନ୍ଦର ସେମନ୍ତେ ଦାସ ଦାସୀ     କାନ୍ଦିଲେ ଝରନ୍ତେ ଚକ୍ଷୁଁ ଅଶ୍ରି,
ଢାଳି ନେତ୍ରୁଁ ଲୋତକ ଅସରଣ କଲେ ଶୋକ ଯେତେକ ନନ୍ଦ ପ୍ରତିବେଶୀ,
ହେ ବୁଧଜନ ! ୩୨

କ୍ରନ୍ଦନ କୋଳାହଳ   କଲ ପୁର ସରୋଳ   ଅକ୍ରୂର ଗୋପାଳ ଗମନେ
ଅନ୍ତପୁରେ ପ୍ରବେଶି   ଦମ୍ଭାଳବ ପ୍ରକାଶି   ହସିଲା ଶନସ୍ତ ବଚନେ
ହେ ବୁଧଜନ !

"ନ କର ଚିନ୍ତା ଯଶୋମତି !     ବୃଥାରେ କପାଁ କର ଭୀତ,
କଂସେ ଦର୍ଶନ କରି ସୁଖେ ଅସିବେ ଫେରି କଂସାରି ଲଭଣ ସୁଖ୍ୟାତ
ଗୋ ବ୍ରଜେଶ୍ୱରୀ ! ୩୩

ମଥୁରା ପୁରେ ଅସି   ରୁଣ୍ଡ ନିସ୍ୱର ବାଶୀ   ପ୍ରକାଶି ନିଜ ରାଜଭକ୍ତି
କହ ତୁମ୍ଭେ କପାଇଁ ହୋଇବ ରାଜଦ୍ରୋହୀ କଂସରେ କର ଅପୀରତ
ଗୋ ବ୍ରଜେଶ୍ୱର !

ଦେଖିଲେ କାହ୍ନୁଙ୍କୁ ତୁମ୍ଭର     ସ୍ୱର୍ଗ ଲଭିବ ନୃପବର,
ଦେବ ସେ ଉଚ୍ଚପଦ   ସହ ରାଜ ପ୍ରସାଦ ସମ୍ପଦ   ବଢ଼ିବ ତୁମ୍ଭର ଗୋ,
ନନ୍ଦରାଣି ! ୩୪

ଫେରାଇ ଦେଲେ ରଥ   ହେବ କଂସ କୁପିତ   ନିଶ୍ଚିତ ଘଟିବ ପ୍ରମାଦ
ଗୋପ ଗୋପୀମା ଯେତେ ମରିବେ କଂସ ହସ୍ତେ ତ୍ୱରିତେ ଯିବ ନନ୍ଦ ପଦ
ଗୋ ବ୍ରଜେଶ୍ୱରୀ !

ନ ଥିବ ଅଉ ଗୋପପୁର     ରହିବେ କାହ୍ନୁ କାରାଗାର,
ଅଥବା ଖଡ୍ଗ ଦେଇ ଦାରୁଣ-ନୃପମଣି ହାଣିବେ ନନ୍ଦକାହ୍ନୁ-ଶିର ଗୋ,
ବ୍ରଜେଶ୍ୱର ! ୩୫

କାହିଁ ଯଶୋଦା ନନ୍ଦ   ଭଲ କଥାକୁ ମନ୍ଦ   କରୁଛ ଅବିବେକ ପଣେ
ଲଙ୍ଘିଲେ ରାଜାଦେଶ   ଘଟିବ ସର୍ବନାଶ   ଜଣଷ୍ଟା ସ୍ଥାନ ଦେଖ ସତ୍ୱରେ
ଗୋ ବ୍ରଜେଶ୍ୱର !

ରଥ ପେଷିଛୁ ନରପତି, ଏଥି ବଳି କି ଅଛି ଖ୍ୟାତି,
ଏମନ୍ତ ଗଜରଥ ନ ଲଭିବ ବାସବ ଶଚୀଙ୍କ ପାର ସ୍ୱର୍ଗଭୂତ
ଗୋ ବ୍ରଜେଶ୍ୱରୀ ! ୩୬

ସୁଖେ ବସାଇ ରଥେ ଘେନି ମୁଁ ଯିବି ପଥେ ଅଚ୍ୟୁତେ ପରମ ଯତନେ,
କଂସାପୁରେ ଭେଟାଇ ଧନୁସ୍ରବ ଦେଖାଇ ଫେରାଇଦେବି ଶ୍ରୀବଦନେ
ଗୋ ବ୍ରଜେଶ୍ୱରୀ !

ଭାବନା ଦିଅ ଦୂର କରି, ଦେଖନ୍ତୁ ଶ୍ୟାମ ମଧୁପୁରୀ,
ନ ପେଷିଣ ବିଦେଶେ ରଖିଲେ ସଦା ପାଶେ ହେବେ ସେ ଅଧମ ସଂସାରୀ
ଗୋ ବ୍ରଜେଶ୍ୱରୀ !" ୩୭

"କଂସାପୁର ଡଗର ଅଟ ତୁମ୍ଭେ ଅକ୍ରୂର, ମୋହର ତେଣୁ ଅବିଶ୍ୱାସ"
କହୁଁ ବ୍ରଜମହିଷୀ କେତେକ ସ୍ତୁତିବେଣୀ ଭାଷିଲେ ଦେଲେଣ ଆଶ୍ୱାସ,
ହେ ବୁଧଜନ !

"କଂସ ଡଗର ଭଦ୍ର ଅତି ନ କର ଶଙ୍କି । ମନେ ଭୀତି,
ସ୍ୱଚ୍ଛନ୍ଦେ ଅନାତଙ୍କେ ପଠାଅ ତାଙ୍କ ସଙ୍ଗେ ଶ୍ରୀରଙ୍ଗେ ଶୁଭକାଳ ଚନ୍ଦ୍ର
ଗୋ ବ୍ରଜେଶ୍ୱରୀ !" ୩୮

ଗୋପକୁଳ ନାୟକ ସମ୍ଭାଳି ଗୃହଶୋକ ଗଣକ ଡକାଇ ହରଷେ,
କହିଲେ, "ମଧୁଧାମ ଯିବେ ମୋ ଶ୍ୟାମ ରାମ ଉତ୍ତମ ଲଗ୍ନର ପ୍ରବେଶେ,
ହେ ସୁଗଣକ !"

ନତ ବଚନେ ଧୀରମତି କହିଲେ ଗଣି, "ଶୁଭ ଅତି,
ଅଟେ କାଲି ପ୍ରଭାତ ଶୋଭନ ଯୋଗଯୁତ ଉଚସ୍ଥ ଲଗ୍ନେ ଭୃଗୁପତି
ହେ ବ୍ରଜପତି !" ୩୯

ଗୋପୀନେତ୍ର-ଗୃହକ— ନବୀନ-ବଳାହକ ଜନକ ଅନୁମତି ପାଇ
ମଣ୍ଡିଲେ ସେହିକ୍ଷଣି ପାଦେ ବ୍ରଜ ସରଣି ମେଲଣି ବ୍ରଜୁଁ ନେବାପାଇଁ
ହେ ବୁଧଜନ !

ଗଡ଼ରେ ମୃଗରାଜଠାଣି        ଜାଣି ଗମିଲେ ଚକ୍ରପାଣି,
ପୁଚ୍ଛ ପୁରେ ଗମନ କଲେ ମାଳୀ ଯେସନ ଚମ୍ପକ ଭରଲ ନଳିନୀ,
ହେ ବୁଧଜନ ! ୪୦

ଘୋର ବଳାପଧ୍ୱନି   ହେଲା କ୍ରମଶଃ ଭିନ୍ନ ରଜନୀ   ଆଗମନେ ଯଥା
କ୍ରମେ ହୁଏ ନାରୋଳ   ଖଗକୁଳ ସଙ୍କୁଳ ଅଚଳ   ଚଳେ ତରୁ ଲତା
ହେ ବୁଧଜନ !

ସକଳେ ଶୋକାକୁଳ ମନ        ଗମିଲେ ଯେ ଯାହା ସଦନ,
କାଳିନ୍ଦ୍ରେ ନେଲେ ନିଶି ଚନ୍ଦ୍ରା ସାଗରେ ଭାସି ସକଳ ଗୋପପୁର ଜନ
ହେ ବୁଧଜନ ! ୪୧

ଆସିଲା ନିଶା ଚର   ଯେସନେ ନିଶାଚର   ଗ୍ରାସିଲା ବ୍ରଜକୁ ସତ୍ୱର,
କରୁଣ ଅଶ୍ରୁ ଜାଳ   ଛାଦଲେ ତାରାବଳୀ   ମିଳିଣ ଶଶାଙ୍କ ସଙ୍ଗର
ହେ ବୁଧଜନ !

ପଦ ଏକୋନଚତ୍ୱାରିଂଶ        ତୃତୀୟ ଛାନ୍ଦ ହେଲା ଶେଷ,
ଚିନ୍ତାମଣି ଚରଣ   କର ସଦା ସ୍ମରଣ ହରଣ   ହୋଇବ କଲୁଷ
ହେ ବୁଧଜନ ! ୪୨



# ଚତୁର୍ଥ ଛାନ୍ଦ

ରାଗ—ଚନ୍ଦ୍ରାଦେଶାକ୍ଷ *

## କୃଷ୍ଣଙ୍କର ବିଦାୟ ଗ୍ରହଣ

ରାଧା ମନ୍ଦିରେ ପ୍ରବେଶି ହରି ,        ରାଧା କରପଦ୍ମ କରେ ଧରି,
କହନ୍ତି, "କଂସର   ଆସିଛୁ ଡକରା   ମୋତେ ନେବାପାଇଁ ମଧୁପୁରୀ
ଗୋ କିଶୋରୀ ! ୧

* ବୈଦେହୀଶ ବିଳାସ "ବୃଥେ ଶୁଣିମା ଦେଇ ସୁମତି" ରାଗେ ।

ଅତି ପ୍ରତାପୀ ମଥୁରାରାଣ, ଧନୁ ଉତ୍ସବ କର ଘୋଷଣ,
ଦାନବ ମାନବ ଯକ୍ଷ ନାଗ ଦେବ ସମସ୍ତଙ୍କୁ କରିଛି ଆହ୍ୱାନ
ଗୋ କିଶୋର ! ୨

ଅଟେ ଅଲଙ୍ଘ୍ୟ ନୃପ ଆଦେଶ, ତାଙ୍କ ରାଜ୍ୟେ କରୁ ଅଛୁଁ ବାସ,
ମୋ ପିତା ସକାଶେ ଶରଧା ବିଶେଷେ ମନେ କରିଅଛି ରାଜା କଂସ
ଗୋ କିଶୋର ! ୩

ନନ୍ଦ ହେଲେଣି ତ ବୃଦ୍ଧ ଅତି, ରାଜକାର୍ଯ୍ୟକୁ ନାହିଁ ଶକତି,
ହୋଇ ରାଜାଧୀନ ନ କଲେ ସାଧନ ରାଜକାର୍ଯ୍ୟ ଘଟିବ ଦୁର୍ଗତି
ଗୋ କିଶୋର ! ୪

ତୁମ୍ଭ ପ୍ରୀତି ଜୀବନେ ମୁଁ ମୀନ, ତୁମ୍ଭ ପ୍ରୀତି ମୋ ପରମଧନ,
ତୁମ୍ଭ ପ୍ରୀତି ଭିନ୍ନ ନ ବାଞ୍ଛେଁ ମୁଁ ଆନ ତୁମ୍ଭ ପ୍ରୀତି ମୋ ପରମସ୍ଥାନ
ଗୋ କିଶୋର ! ୫

ରାଜା ବଳକୁ ନାହିଁ ତ ବଳ, ଯଦି ନ ଯିବି କଂସ ଭୂପାଳ
କ୍ରୋଧ ବହ୍ନି ମନେ ଗୋପପୁର ଜନେ ଦେବ ଅପାର ଦଣ୍ଡ କରାଳ
ଗୋ କିଶୋର ! ୬

ନାହିଁ ଇଚ୍ଛା ତେଜି ବୃନ୍ଦାବନ, ତେଜି ତୁମ୍ଭ ଶଶାଙ୍କବଦନ,
ତେଜି ସ୍ନେହାକର ଜନନୀ ପିଅର କରିବାକୁ ମଥୁରା ଗମନ
ଗୋ କିଶୋର ! ୭

ବିଧି ଇଚ୍ଛାରେ ଚଳେ ସଂସାର, କିଏ ବିଧିଠାରୁ ବଳୀୟାର ?
ରଜ୍ଜୁ ବନ୍ଧ ପରି କରି ମଧୁପୁରୀ ମୋତେ ନେଉଛନ୍ତି କଂସଡଗର
ଗୋ କିଶୋର !” ୮

ରାଧା ଚିବୁକେ କରକମଳ ପୁଣି ନିବେଶି ଯଶୋଦାବାଳ,
କହନ୍ତି, “ମେଲାଣି ସୁଧାଂଶୁବଦନି ! ଦିଅ ଚଳନ୍ତୁ ହେଉଛି କାଳ
ଗୋ କିଶୋର ! ୯

ରଥ ସଜାଇ କଂସ ତଗର,          ଫେରି ଯିବାକୁ ହୁଏ ତତ୍ପର,
ତର୍ଜନ ଗର୍ଜନ  କରେ କ୍ଷଣ କ୍ଷଣ  ଦେଖି ଯିବାକୁ ମୋତେ ସତ୍ୱର
ଗୋ କିଶୋରି ! ୧୦

ମାତା ଅର୍ଚ୍ଚନା କରନ୍ତି ଶିବ,          ହୃଦେ ମନାସିଣ ମୋର ଶିବ,
ନାଶିବେ ଦୁର୍ଗତି ମୋର ଦୁର୍ଗାପତି  ସଙ୍ଗେ ଯିବେ ଭ୍ରାତା ବଳଦେବ
ଗୋ କିଶୋରି !" ୧୧

କାଷ୍ଠପୁତ୍ତଳିକା ପରି ହୋଇ,          ମୁଗ୍ଧା ଶ୍ୟାମଗତପ୍ରାଣା ରାଇ,
କୃଷ୍ଣଙ୍କ ବଚନ    କରିଣ ଶ୍ରବଣ    କ୍ଷଣେ ରହିଲେ କିଛି ନ କହି
ହେ ସୁଜନ ! ୧୨

ହେଲା ଭାବଶୂନ୍ୟ ରାଧା ମନ,          ମୁଖେ ସ୍ଫୁରିଲା ନାହିଁ ବଚନ,
ଶ୍ୟାମର କମଳ-    ବଦନେ ଅଚଳ    ହେଲା ଚଞ୍ଚଳ ମୀନନୟନ
ଯେ ରାଧାର । ୧୩

କ୍ଷଣେ ମଉନେ ରହି କିଶୋରୀ          ଧୀରେ କହିଲେ କୋମଳ କରି,
"ସ୍ନେହ-ଗୋମୁଖରୁ*  ଝରିଲା କି ଗୁରୁ  ମୃଦୁ ଶୀତଳ ଜାହ୍ନବୀବାରି
ହେ ସୁଜନ ! ୧୪

ଏତେ କଠୋର ଛଳବଚନ          ନୋହେ ଉଚିତ ଜୀବନଧନ,
ହୃଦେ କି ମଲ୍ଲିକା    ମୁଖେ ଜଳଜିକା    ତପ୍ତବାରି କରିଲେ ସେଚନ
ହେ ମୋହନ !" ୧୫

ପୁଣି କହେ ହସି ମଦହାସ,          ଯଥା ଦ୍ୱିତୀୟାଶଶୀ ପ୍ରକାଶ,
କପଟଅଗ୍ରର    ଚିରକାଳ ପାର    ତାର କଥା କେ କରେ ବିଶ୍ୱାସ
ହେ ମୋହନ ! ୧୬

ଦିନେ ହେଲ ଯମୁନାରେ ଦାସ,    ଦିନେ ହେଲ କଳାଭୂତ ବେଶ,
ଦିନେ ଭଗିରଣୀ ଦିନେ ଯେ ମାଳୁଣୀ ତୁମ୍ଭ କଥାରେ ନାହିଁ ବିଶ୍ୱାସ
ହେ ମୋହନ ! ୧୭

---

*ଗଙ୍ଗାର ଉତ୍ପତ୍ତିସ୍ଥାନ

ହେଲ କଳୁଷ ଅପୂର୍ବ ଜୀବ, ଗୋପେ ଭ୍ରମିଲ କରି ଅଭବ ।
ନାମ ମାୟାଧର ଅଟଇ ଯାହାର କେ ତା କଥା ପ୍ରତ୍ୟୟ କରିବ
ହେ ମୋହନ ! ୧୮

ଶୁଣ କର କହ ବଂଶୀଧର , ଯଦି ସତ୍ୟ ଯିବ ମଧୁପୁର,
ଅଟେ ଇଷ୍ଟଦେବ ବଂଶୀ ପରି ତବ ବଂଶୀ ଛୁଇଣ ଶପଥ କର
ହେ ମୋହନ !" ୧୯

ଯଥା ପ୍ରଦୋଷେ ନୀଳକମଳ, ମ୍ଳାନବଦନେ ଯଶୋଦାବାଳ
କହିଲେ, "କୈତବ ନ କରେଁ ରାଜୀବ-ନେତ୍ରି ! ବିଳମ୍ବ ହେଉଛି କାଳ
ଗୋ କିଶୋରି !" ୨୦

ଶ୍ୟାମ ବଚନ ଶ୍ରୀମତୀ ଶୁଣି, ଝାଟ* ପଡ଼ି ଲୋଟିଲେ ଧରଣୀ
ରମ୍ଭା ବାତ୍ୟାହତ ଯଥା ଭୂପତିତ କୋଳେ ଧରିଲେ ମୁରଲୀପାଣି
ହେ ସୁଜନ ! ୨୧

ନୀଳଜଳଦପଟଳେ ଯଥା ଶୋଭେ ଅଚଳା ଚପଳାଲତା,
କଷ୍ଟିପାଷାଣେ ବା ହେମରେଖା ଅଙ୍କ ତଥା ଶୋଭିଲେ କୁମୁଦସୁତା
ହେ ସୁଜନ ! ୨୨

ଦେଖି ଦୂତୀ ହେଲା ସମାକୁଳ, ପାଶେ ପ୍ରବେଶି ଅତି ଚଞ୍ଚଳ
ବାସର ଅଞ୍ଚଳ ଭରଣି ସଚଳ ମୁଖେ ସିଞ୍ଚିଲା ଶୀତଳ ଜଳ
ହେ ସୁଜନ ! ୨୩

ଧୀରେ ଶୋକକଳୁଷିତସ୍ୱରେ ପ୍ଲାବି ନୟନ ନୟନ-ନୀରେ,
"ଶ୍ରୀମତି" "ଶ୍ରୀମତି" ଡାକି ଡାକି ଦୂତୀ କର-ପତର ତାଡ଼ିଲା ଶିରେ
ହେ ସୁଜନ ! ୨୪

ଶୋକାକୁଳ ହୋଇ ବଂଶୀଧର ଅଶ୍ରୁ ସିଞ୍ଚିଲେ ରାଧା ମୁଖର,
ଯଥା ନବଘନ କରଇ ମୋଚନ ସଜଳପତ୍ର ଶତଦଳେ ନୀର
ହେ ସୁଜନ ! ୨୫

---

* ଝଟିତର ଅପଭ୍ରଂଶ

ରାଧା ଶୁଣି ପାଶେ ବେଣୁପାଣି, ଧୀରେ ଉଚ୍ଚାର କୋମଳବାଣୀ,
ଡାକିଲେ "କିଶୋରି" "ରାସରସେଶ୍ବରି" ପଢ଼ିଲେ କି ମନ୍ତ୍ର ସଞ୍ଜୀବନୀ
ହେ ସୁଜନ ! ୨୬

ପାଇ ଏମନ୍ତ ବ୍ରଜଯୁବତୀ, ଧୀରେ ଗୃହିଁଲେ ନୟନ ଫେଡ଼ି,
କିବା ଅରବିନ୍ଦ ଫେଡ଼ି ନିଜ ମୁଦ ନେଇ ମୋଦକୁ ଦେଲା ସଞ୍ଚାରି
ହେ ସୁଜନ ! ୨୭

ଦେଖି ନିଜକୁ କେଶବ କୋଳେ, ଗୁହିଁ ଦୂତୀଙ୍କ ଉଭରଛନ୍ଦ ଡୋଳେ,
ହୋଇ ଲଜ୍ଜାବଶ ଉଭରତରେ ବାସ ରାଧା ସମ୍ଭାଳି ବସିଲା ତଳେ
ହେ ସୁଜନ ! ୨୮

ଶ୍ୟାମ ମଥୁରା ଗମନ କଥା, ଅସି ଘୋଟିଲା ମାନସେ ଯଥା,
ପ୍ରାବୃଡ ଜଳଧର ଘୋଟଇ ଅମ୍ବର ହୋଇଁ ଅମାରଜନୀ ବଗତା
ହେ ସୁଜନ ! ୨୯

ବ୍ରୀଡ଼ାରକ୍ତିମ ରାଧା ବଦନ, କଲା ଧାରଣ ମ୍ଳାନବରଣ,
ଯଥା ନିଦାଘର ପୂର୍ଣ୍ଣ ଶଶଧର ଶୋଭେ ହେଲା ଅଧର କମ୍ପନ
ହେ ସୁଜନ ! ୩୦

ନୀର ନେତ୍ରେ ବହୁ ଝରଝର, ଭିଜା ଗଣ୍ଡଦେଶ ଜରଜର,
ରୁଦ୍ଧ କଣ୍ଠଦେଶ ନ ହୁଏ ପ୍ରକାଶ ମୁଖେ ପିକବଚନାର ଗିର
ହେ ସୁଜନ ! ୩୧

ପିକକଣ୍ଠ ହୋଇଲା କର୍କଶ, ଶୋକ-ପ୍ରାବୃଟ ହୋଇଁ ପ୍ରବେଶ,
ଅତି ପ୍ରୟାସରେ ଖଣ୍ଡବଚନରେ ଗଦଗଦେ ଭାଷିଲା ବାଳୀଶ
ହେ ସୁଜନ ! ୩୨

"ଗୋପ-ପଙ୍କଜବନ-ମିହିର ! କର ଗୋପପୁର ଅନ୍ଧକାର,
ମଥୁରାଭୁବନ କରିବ ଗମନ ଦୟା ତଳେ କି ନାହିଁ ତୋହର
ହେ ମୋହନ ! ୩୩

ନନ୍ଦ ଗୋପପୁର ଅଧିପତି, ରାଜକାର୍ଯ୍ୟମାନ ସେ ଜାଣନ୍ତି,
କି ଶବେକପଣେ ନ ଯାଇ ଅପଣେ ମଧୁପୁରେ ତୁମ୍ଭଙ୍କୁ ପେଷନ୍ତି
ହେ ମୋହନ ! ୩୪

ସରୋଜନୀର ଅଶ୍ରୁ ବନ, ଦେଖଁ ବାରବାରଣ ଭଗନ,
ବହିଯାଏ ପାଣି କମ୍ବାଳଶାୟିନୀ ନଳିନୀର କି ରହେ ଜୀବନ
ହେ ମୋହନ ! ୩୫

ନୋହେ ଅଧିନୀ ଶ୍ରୀପଦେ ଦୋଷୀ, ଅଧିନୀଙ୍କ କା! ଙ୍କରେ ନିବେଶି,
ହୋଇଅଛ ଅଜ ମଥୁରାକୁ ସଜ ଝୁରିବାକୁ ଦିବସ ନିଶି
ହେ ମୋହନ ! ୩୬

ନାରୀସ୍ୱଭାବ-ସୁଲଭ ଦୋଷ, କଲି ହୋଇଣ ସ୍ୱଭାବବଶ
ଥିଲ ଦମ୍ଭ ମନେ କ୍ଷମାଶୀଳଗୁଣେ ଅନୁପମ ଭବେ ପୀତବାସ
ହେ ମୋହନ ! ୩୭

ଦିନେ ଦିନେ ନିଜ ମୂଢ଼ପଣେ, କଷ୍ଟ ଦେଇଛୁ ମହିଷୀ ମାନେ
ନ କରିବ ମାନ ଥିବାଯାଏ ପ୍ରାଣ ମୋତେ ନ ଫିଙ୍ଗ ଦୁଃଖ-ଦହନେ
ହେ ମୋହନ ! ୩୮

ମୋର ଦୋଷମାନ ମନେ ଧରି, ଯଦି ଯାଉଛ କଂସନଗରୀ,
ଧରୁଛି ଚରଣ କର କ୍ଷମାଦାନ ହୃଦେ ଅଛ କ୍ଷମାସିନ୍ଧୁ ଭରି
ହେ ମୋହନ ! ୩୯

ଏକା ତୁମ୍ଭଙ୍କୁ କରି ସମ୍ବଳ, ବ୍ରଜେ ସହିଲି ନିନ୍ଦା ବହୁଳ,
ନାହରେ ଗଞ୍ଜନା ଜଗତଲାଞ୍ଛନା ସହି ପାଇଲି କି ପ୍ରତିଫଳ
ହେ ମୋହନ ! ୪୦

ଫନ୍ଦା ଫାନ୍ଦିଥିଲି ମୁଁ ତୁମ୍ଭଙ୍କୁ, ମନେ ବାନ୍ଧିଥିଲି ମୁଁ ଦମ୍ଭକୁ,
ମୋତେ ବଂଶୀଧର ନ କରିବେ ଦୂର ବୃଥା ପାତିଲି ଫାନ୍ଦ-ଅମ୍ଭକୁ
ହେ ମୋହନ ! ୪୧

ଏହା ନ ଥିଲା ସ୍ୱପନେ ମନେ, ଶ୍ୟାମ ବିଚ୍ଛେଦ ସହିବ ଦିନେ,
ଗୁପ୍ତ ଚିତକ୍ଷତ କାହାର ଅଜ୍ଞାତ ଷରୁ ଘଟିଲ ବିଧିବିଧାନେ
ହେ ମୋହନ ! ୪୨

ପ୍ରୀତି-ଲତିକା କରି ରୋପଣ, କଲ ପ୍ରେମ ସଲିଳ ସେଚନ,
ନବ-କିଶଳୟ ମୁକୁଳନିଚୟ ହେଉଁ ତାହାକୁ କଲ ଛେଦନ
ହେ ମୋହନ ! ୦୩

ସୁହେ କୁଟିଳା ନଣନ୍ଦ ମନ, ତୁମ୍ଭ ଲାଗି ତା ସଙ୍ଗେ ମୋ ଦ୍ୱନ୍ଦ୍ୱ,
ତୁମ୍ଭ ଲାଗି ସିନା ସହେ ମୁଁ ଗଞ୍ଜନା ଦୁଃଖେ ପାସୋରି ହୁଏ ଅନନ୍ଦ
ହେ ମୋହନ ! ୪୪

ସୁଧାରଶ୍ମି ରାହୁଗ୍ରହ ପରି, ମୋତେ କରେ ବଧୂ ଦୁରାଚାରୀ,
ଅମୃତ ଭୋଜନ କାଳରେ ଛେଦନ କରେ ଶିର କି ମନେ ବିଚାରି
ହେ ମୋହନ ! ୪୫

ଯଦି ଛାଡ଼ିଣ ଯିବ ମଥୁରା, ହେବ ସଦନ ଭୀଷଣ କାରା,
ହେବ ବୃନ୍ଦାବନ ମରୁର ସମାନ ହେବ ଯମୁନା ଗରଳ-ନୀରା
ହେ ମୋହନ ! ୪୬

କିଏ ଯମୁନା ତଟିନୀ କୂଳେ, ଛନ୍ଦେ ଉଭା ହୋଇ ନୀପମୂଳେ,
"କିଶୋରି" "କିଶୋରି" "ରାଧା" "ରାଧା" କରି, ବଂଶୀ ବଜାଇବ ସନ୍ଧିକାଳେ
ହେ ମୋହନ ! ୪୭

କିଏ ବାଳା ଭିଖାରୁଣୀ ବେଶେ, ହୋଇ ବୀଣାପାଣି ଗୋପଦେଶେ,
ଜାଣି ବୀଣାପାଣି କରି ବୀଣାଧ୍ୱନି ଗାଇ ନାଚିବ ଗୋପୀଙ୍କ ପାଶେ
ହେ ମୋହନ ! ୪୮

କିଏ କପଟେ ହୋଇ ଧୀବର, ହେବ ଯମୁନାରେ କର୍ଣ୍ଣଧାର,
କରି ନାନାରଙ୍ଗ ଯମୁନାତରଙ୍ଗ ଗୋପୀଜନଙ୍କରେ କରିବ ପାର
ହେ ମୋହନ ! ୪୯

କିଏ କଙ୍କଟେ ହେବ ସିଙ୍ଗାରୀ,   ଲାକ୍ଷାରସେ ଅଙ୍ଗ ଘଷି କରି,
ଧରି ମୋ ଚରଣ   କରିବ ରଞ୍ଜନ   ନାନାବନ୍ଧେ ବାନ୍ଧିବ କବରୀ
ହେ ମୋହନ ! ୫୦

ଲଭି ଯମୁନାତଟିନୀ ତଟେ ,   କିଏ ଜଗିଣ ବସିବ ବାଟେ,
ଭାଙ୍ଗିଣ କଳସ   ହେବ ହସ ହସ   ଦେଲେ କର୍କଶ ଗାଳି ନିଘଟେ
ହେ ମୋହନ ! ୫୧

ତାହା ଶ୍ରୀମୁଖ ଦର୍ଶନ ଅଶେ,   ଲଜ୍ଜା ଭୟ ନ ରଖି ମାନସେ,
ନ ମାନିଣ ମନା   ଯିବ ମୁଁ ଯମୁନା   ଲଭି ଭ୍ରମିବ କାନନଦେଶେ
ହେ ମୋହନ ! ୫୨

ତାହାଠାରେ ମୁଁ କରିବ ମାନ ,   କିଏ ମୋଠାରେ ହୋଇଣ ହୀନ,
ଟେକିଣ ଉନ୍ନତ   କରିଣ ବିନତ   ମୋର ମାନ କରିବ ଭଞ୍ଜନ
ହେ ମୋହନ ! ୫୩

ତାହା ବାମପାଶେ ଉଭା ହୋଇ ,   ବେଣୁ ବଜାଇ ଶିଖିବ ମୁହିଁ,
କିଏ ଧୃଷ୍ଟ କରି   କହିବ, "କିଶୋରି ତୁମ୍ଭେ ଅଜଠୁଁ ଶ୍ୟାମ ମୁଁ ରାଇ"
ହେ ମୋହନ ! ୫୪

ଭଜି ତୁମ୍ଭଙ୍କୁ ପୁରୁଷୋତ୍ତମ ,   ଛାଡ଼ି ଲଜ୍ଜା ଭୟ କୁଳଧର୍ମ,
କରିଛୁ ଅର୍ପଣ   ମୋ ମନ ଜୀବନ   ବିନିମୟେ ତୁମ୍ଭ ସୁଧାପ୍ରେମ
ହେ ମୋହନ ! ୫୫

ଘେନି ମୋ ମନ ପ୍ରାଣ ସଙ୍ଗରେ ,   ରଖି ପିଣ୍ଡ ମାତ୍ର ଗୋପପୁରେ,
କେମନ୍ତେ ମଥୁରା   କରୁଛ ଯାତରା   ପିଣ୍ଡ ଦଉ ମଧ ତୁମ୍ଭ କରେ
ହେ ମୋହନ ! ୫୬

ତେଣେ ନିଜର କରିବ ଗତ,   ଯେଣେ ଯାଉଛ ଘେନି ମୋ ମତ,
ଦେଖିବ କେ ଜନ   ରୋଧେ ମୋ ଗମନ   ନାହିଁ କାହାରିକି ମୋର ଭୀତ
ହେ ମୋହନ ! ୫୭

କରି ମୋହର ମନ ହରଣ, ଏବେ କରୁଅଛ ପଳାୟନ,
ମୋତେ ନନ୍ଦବାଳା ନ ଭାଳ ଅବଳା, ବନେ କଣାରେ କରେଁ ଭ୍ରମଣ
ହେ ମୋହନ ! ୫୮

ମୋତେ ଫେରାଇ ଦେଇ ମୋ ମନ, ସୁଖେ ମଥୁରା କର ଗମନ,
ରାଜପୁତ୍ର ହୋଇ କପାଇଁ ଗୋରୀରାଇ ଧେନୁ ଚାରିଲ ମୋ ନୀତ ମନ
ହେ ମୋହନ ! ୫୯

ରାଧାବଚନେ ହସି ଶ୍ରୀହରି, ଧୀରେ କହନ୍ତି କମଳ କର,
"ସନ୍ତାପ ନ କର ମନେ ଯୋଷାବର ! ସଦାକାଳେ ମୁଁ ଅଟେ ତୁମ୍ଭର
ଗୋ କିଶୋରି ! ୬୦

ଛାଡ଼ି ମଞ୍ଜୁଳ ନିକୁଞ୍ଜବନ, ବନପ୍ରିୟ କି କରେ ଭ୍ରମଣ,
ଉପ୍ରମନ୍ଦଦେଶେ ଅଥବା ଆକାଶେ ରହେ ବାରି ତେଜିଣ କି ମୀନ
ଗୋ କିଶୋରି ! ୬୧

ମଧୁପୁରରେ ରହି ଦିନ ଗୁରି, ବ୍ରଜଧାମକୁ ଆସିବି ଫେରି,
ତୁମ୍ଭଠାରେ ମୋର ମନ ସଦା ସ୍ଥିର ଲୋହଶଳାକା ଚୁମ୍ବକ ପରି
ଗୋ କିଶୋରି ! ୬୨

ଦେଖ କେହି ନୁହେ ନିଜାୟତ୍ତ, ଅଟେ ବିଧାନାବଳୀ ଜଗତ,
ବିଧାନସ୍ରୋତରେ ଭାସି ଗତି କରେ ଏହି ଚରାଚର ଅବିରତ
ଗୋ କିଶୋରି !" ୬୩

ରାଧା କମଳନୟନୁଁ ବାରି, ବାହେ ପୋଛି ଦେଇ ବଂଶୀଧାରୀ,
ବିନୟରେ ପୁଣ କହିଲେ ବଚନ "ଦିଅ ଆଜ୍ଞା ଯିବି ମଧୁପୁରୀ
ଗୋ ! କିଶୋରି !" ୬୪

ରାଧା କହିଲେ, "ଅଛି ମୋ ରାଣ, ରହି ଦିନ ଗୁରି ଅବା ବାଣ,
ଆସିବ ସୁନ୍ଦର ! ଫେରି ଗୋପପୁର ବସି ଗଣିବି ଆସିବା ଦିନ
ମୁଁ କାତରେ !" ୬୫

ବେନି ରହିଲେ କ୍ଷଣେ ମଉନେ, ବାଣୀ ନଇଲା ବେନି ବଦନେ,
ମାତ୍ର ଝରନ୍ତର ନେତ୍ରୁଁ ନେତ୍ରନୀର ଝରି ମିଶିଲା ବକ୍ଷଚନ୍ଦନେ
ହେ ସୁଜନେ ! ୬୭

ଯଥା କ୍ଷୁଧାର୍ତ୍ତ ବ୍ରତୀଜନ , ବ୍ରତପୂର୍ଣ୍ଣାନ୍ତେ କରେ ଭୋଜନ,
ବେନିଙ୍କ ନୟନ କଲା ତଥା ପାନ ବେନି ଅମୃତମୟ ଲପନ
ହେ ସୁଜନ ! ୬୮

ଯଥା ନୃଘାତୀ ଅପେକ୍ଷା କରେ, ପ୍ରାଣଦଣ୍ଡ-ଦଣ୍ଡକୁ କାତରେ,
କଲକ ଅପେକ୍ଷା ତଥା ପୀନବକ୍ଷା ଶ୍ୟାମଗମନଭୀତା ଭ୍ରାନ୍ତରେ
ହେ ସୁଜନ ! ୬୯

ରାଧା ମୁଖ କରି ଧରଣୀକି, କ୍ଷୀଣସ୍ୱରେ କହିଲେ ବାଣୀକି,
"ନ ନେଉଛ ଶ୍ୟାମ ମୋତେ କଂସଧାମ କାଲି ଯିବ ତହିଁ ଦଧି ବିକି
ହେ ମୋହନ !" ୭୦

ଅଳ୍ପ ହସିଣ କହିଲେ ହରି, "ଅତି ଉତ୍ତମ ହେବ କିଶୋରି !
ଯେତେ ଦୁଗ୍ଧ ଦଧି ନେବ ରସନିଧି ! ନେବି ସକଳ ମୁଁ କିଣୁ କରି
ଗୋ କିଶୋରି !" ୭୧

ଦେଇ ରାଧାକୁ ସ୍ନେହାଲିଙ୍ଗନ, ଦେଇ ସାଶ୍ରୁଗଣ୍ଡେ ଚୁମ୍ବଦାନ,
ସହି ମନକଷ୍ଟ କଲେ ନିଜ ପୃଷ୍ଠ ରାଧା ଅଡ଼କୁ ବଂଶୀବଦନ
ହେ ସୁଜନ ! ୭୨

ଚହଲେ ଶ୍ୟାମ କିଛି ଅନ୍ତର , ଧୀରେ ରହିଲା ଗୋପୀନାଗର,
ସ୍ୱପନ ସମାନ ସବୁ ହେଲା ଜ୍ଞାନ ନିଜ ଚିତ୍ତ ନ ହେଲା ଗୋଚର
ହେ ସୁଜନ ! ୭୩

ପୁଣି ହୋଇ କ୍ଷିପ୍ତଜନ ପରି, ଶ୍ୟାମ ପଛେ ଧାଇଁଲେ କିଶୋରୀ,
ଶ୍ୟାମ ସ୍କନ୍ଧେ ପୁଣି ରଖିଣ ବଦନ କାନ୍ଦି କହିଲେ କୋମଳ କରି
ହେ ସୁଜନ ! ୭୪

"ମଧୁପୁରେ କି ଯିବ ନାଗର,  କହ ପଚାରଇ ଶୁଣି ମୋହର,
ଛୁଇଁ ମୋର ମାଥ  କର ହେ ଶପଥ  ବଂଶୀ ଛୁଇଁଣ ଶପଥ କର
ହେ ମୋହନ !" ୭୫

ରାଧା ଗଣ୍ଡେ ନିଜ ଗଣ୍ଡ ଯୋଡ଼ି,  ହରି କହିଲେ, "ଏହେ ଚନ୍ଦ୍ରମୁଖି !
କରୁଛି ଶପଥ  ହୋଇ ବେଣୁହସ୍ତ  ଫେରି ଆସିବି ଉତ୍ସବ ଦେଖି
ଗୋ କିଶୋରି ! ୭୬

ପାଳେ ସଂସାର ବଧୂରି ଆଜ୍ଞା,  ବୃଥା ସିନା ମାନବ ପ୍ରତିଜ୍ଞା,
ରାଧାଙ୍କର ବଳ  ସତତ ସଫଳ  ତୁମ୍ଭେ ଅଟ ତ ପରମ ବିଜ୍ଞା
ଗୋ କିଶୋରି !" ୭୭

ଶ୍ୟାମ ବଚନେ ବିରହଗ୍ରୀତା,  ରାଧା ପଡ଼ିଲେ ଯେସନେ ଲତା,
ଯେବେ ପ୍ରଭଞ୍ଜନ  ଅତି ବଳବାନ  କରେ ତାକୁ ଶାଖୀବିରଚ୍ୟୁତା
ହେ ସୁଜନ ! ୭୮

ସଖୀମାନେ ଅତି ଶୋକାକୁଳେ,  ତାକୁ ଟେକିଣ ଧରିଲେ କୋଳେ,
ସଧୀରେ ଚାଳନ  କରିଣ ବ୍ୟଜନ  ବାରି ସିଞ୍ଚିଲେ ମୁଖ-କମଳେ
ହେ ସୁଜନ ! ୭୯

ଯଥା ପ୍ରତିମାକୁ ଧରି ଜନେ,  ଯାନ୍ତି ଘେନିଣ ଅର୍ଚ୍ଚନା ସ୍ଥାନେ,
ସଖୀମାନେ ଧୀରେ  ତଥା ଶଯ୍ୟାଗାରେ  ନେଲେ ରାଧାଙ୍କୁ ଅତି ଯତନେ
ହେ ସୁଜନ ! ୮୦

ରାଧା ପାଶରୁ ଘେନି ମେଲାଣି,  ଧୀରେ ଲେଉଟିଲେ ବେଣୁପାଣି,
ବରଜ ଧାମରେ  ଭ୍ରମି ଘରେ ଘରେ  ନେଲେ ବିଦାୟ ବିନୟ ଭଣି
ହେ ସୁଜନ ! ୮୧

ଦେଇ କାହାକୁ ସ୍ନେହାଲିଙ୍ଗନ,  କହି କାହାକୁ ସୁଧାବଚନ,
କାହାକୁ ଭକତି  ଦେଖାଇ ଶ୍ରୀପତି  ଫେରି ଗୃହକୁ କଲେ ଗମନ
ହେ ସୁଜନ ! ୮୨

ବ୍ରଜେ ଯେତେ ଯୁବତୀ ଯୁବକେ,     ବୃଦ୍ଧା ବୃଦ୍ଧ ବାଳିକା ବାଳକେ,
ଶ୍ୟାମ ଗୁଣ ରୂପ ଘେନି କଲେ ଗଳ୍ପ ବସି ଗୃହେ ଦାଣ୍ଡେ ଥୋକେ ଥୋକେ
ହେ ସ୍ୱଜନ ! ୮୩

କେହୁ କହେ, "ନନ୍ଦ ମନ୍ଦ ଅତି,     ଶିଳା-ହୃଦୟା ଯଶୋଦା ସତୀ,
ନୋହିଲେ କପାଇଁ   ଦିଅନ୍ତେ ପଠାଇ   ବାଳସୁତଙ୍କୁ କଂସର କତି
ହେ ପୌରେୟ !"୮୪

କେହୁ କହେ 'ଅଛି ଶ୍ୟାମ ମନ,     କରିବାକୁ ମଥୁରା ଗମନ,
ନୋହିଲେ କପାଇଁ  ତରତର  ହୋଇ ମାଗି ବୁଲନ୍ତେ  ମେଲାଣିଦାନ
ହେ ପୌରେୟ !"୮୫

କେହୁ କହେ "ଅମ୍ଭ ପୀତବାସ,     ନ କରନ୍ତି କଂସ ରାଜ୍ୟେ ବାସ,
ବ୍ରଜଅଧିପତି   ନନ୍ଦ ତ ଅଟନ୍ତି   ଅମ୍ଭ ନୃପତି   ନୁହଇ କଂସ
ହେ ପୌରେୟ !" ୮୬

କେହୁ କହେ, "ଦେଇ ବହୁଧନ,     ଗୁଳି ମୋହିବା ଅକ୍ରୂର ମନ,
ଶଶଧର ପର   ରାଜକର୍ମଗୁରୁ   ତାଙ୍କୁ ଗଦ ମନ୍ଦ ବିନା ଧନ
ହେ ପୌରେୟ !" ୮୭

କେହୁ କହେ, "ଯମ ତ ଅକ୍ରୂର,     ଘେନିଯିବ ଜୀବନ ଗୋପର,
ତା କର ଚରଣ   କରଣ ବନ୍ଧନ   ଗୁଳ୍ ନିକ୍ଷେପିବା ଯମୁନାର
ହେ ପୌରେୟ !" ୮୮

କେହୁ କହେ, "ବଧିଲେ ଅକ୍ରୂରେ,     ରହି ପାରିବ କି ଗୋପପୁରେ,
ସେ ଦାରୁଣ କଂସ  ହୋଇ କ୍ରୋଧବଶ  ବୁଡାଇବ ବ୍ରଜକୁ ସାଗରେ
ହେ ପୌରେୟ !" ୮୯

କେହୁ କହେ, "ରାଜା କଂସାସୁର, ଗୋପେ ପେଷିଲା ଯେତେ ଡଗର,
ସମସ୍ତେ ଶମନ ଭବନେ ଗମନ     କଲେ କପାଁ ନ ଯିବ ଅକ୍ରୂର
ହେ ପୌରେୟ !" ୯୦

କେହୁ କହେ, "ଗୁଳ ସର୍ବେ ମିଳି, କର ତଗର ସଙ୍ଗରେ କଳି,
ଗାଳି ଦେବା ଅଣ୍ଟେ ପ୍ରହାରିବା ଘୁଣ୍ଟେ ଦେବା ମନେ ଅଛୁ ଯେତେ ଗାଳି
ହେ ପୌରେୟୁ !" ୯୧

କେହୁ କହେ, "କଂସ ଅଭ୍ୟାଗ୍ରରେ, କାଏ ରହୁବ ଗୋପନଗରେ,
ଛନ ଶ୍ୟାମଧନ ଗୁଳ ପଳାୟନ କର ଲଇ ରହୁବା କାନ୍ତାରେ
ହେ ପୌରେୟୁ !" ୯୨

କେହୁ କହେ, "ଗୁଳ ଯିବା ଦ୍ରୁତ, ବଳେ ଭାଞ୍ଜିବା ଅକ୍ରୂର ରଥ,
ଦେଖିବା ଅକ୍ରୂର କେସନ ପ୍ରକାର ଯିବ ଘେନିଣ ବ୍ରଜେଶସୁତ
ହେ ପୌରେୟୁ !" ୯୩

କେହୁ କହେ, "ଗୁଳ ସର୍ବଜନ, ଗୋପଦାଣ୍ଡେ କରିବା ଶୟନ,
କଂସାସୁର ଦୂତ ନ ପାଇଲେ ପଥ ରଥ ଚଳାଇ ନେବ କେସନ
ହେ ପୌରେୟୁ !" ୯୪

କେହୁ କହେ, "ବାଜିଣ ରଥାଙ୍ଗ, ଯାଉ ପଛେ ଭାଞ୍ଜି ଉତ୍ତମାଙ୍ଗ,
ନ ଛାଡ଼ିବା ପଥ ନ ଛାଡ଼ିବା ରଥ ଛାଡ଼ି ନ ଦେବା ଆମ୍ଭ ଶ୍ରୀରଙ୍ଗ
ହେ ପୌରେୟୁ !" ୯୫

କେହୁ କହେ, "କଂସକୁ କି ଭୀତ, ଶ୍ୟାମ ସଙ୍ଗରେ କରିବା ଗତ,
ଉପ୍ରବ ଦେଖିବା ବ୍ରଜେ ଲେଉଟିବା କ୍ଷଣେ ନ ଛାଡ଼ିବା ଶ୍ୟାମ କତ
ହେ ପୌରେୟୁ !" ୯୬

ଏହୁରୂପେ କରନ୍ତି ବଚ୍ଛର, ବ୍ରଜନିବାସୀ ଜନନିକର,
କାହା ନୟନୁଁ ନୀର ଝରେ ଝର ଝର କେହୁ ବସେ ମୁଣ୍ଡେ ଦେଇ କର
ହେ ସ୍ୱଜନ ! ୯୭

କେହୁ ଜାନୁରେ ମସ୍ତକ ରଖି, ଦୁଃଖେ ମୁଖ କରି ଅବନୀକି,
ବସେ ଧରାସନେ କେହୁ ବା ଆସନେ ଭୁଜଦ୍ୱନ୍ଦ ମଧ୍ୟେ ଜାନୁ ରଖି
ହେ ସୁଜନ ! ୯୮

କେହୁ ଗୃହସ୍ତମ୍ଭେ ଭର ଦେଇ, ଉର୍ଦ୍ଧ ଚିତ୍ରାର୍ପିତ ପରି ହୋଇ,
ବାମକରେ କେହୁ ବାମଗଣ୍ଡ ଦେଇ ବସେ କେହୁ ଅବା ଧରଣୀଶାୟୀ
ହେ ସୁଜନ ! ୯୯

ଗୋପଜନଙ୍କ ନୟନ ଯନ୍ତ୍ର, ପରହରି ନିଜ ନିଜ କୃତ୍ୟ,
ହେଲେ ମନେ ଲୀନ ବ୍ରଜପୁର ଜନ ଗଲେ ପାସୋରି ଦୈନିକକୃତ୍ୟ
ହେ ସୁଜନ ! ୧୦୦

ଶ୍ୟାମ ଗମନକାଳ କ୍ରମଶ, ଧୀରେ ଅସି ହେଲା ପରବେଶ,
ଘୋର ଶୋକବାରି ଉଚ୍ଛାଳ ଲହରୀ କ୍ରମେ ପ୍ଲାବିଲା ଗୋକୁଳଦେଶ
ହେ ସୁଜନ ! ୧୦୧

କୃଷ୍ଣଚରିତେ ହୋଇ ହରଷ, କୃଷ୍ଣଚରିତରସିକେ ! ରସ,
ଭକତ ବଶରେ ଧ୍ୟାଇ ମାନସରେ ଚିନ୍ତାମଣିଚରଣ ସାରସ
ହେ ସୁଜନ ! ୧୦୨



## ପଞ୍ଚମ ଛାନ୍ଦ

ରାଗ—ଭାମୋଦୀ *

## କୃଷ୍ଣଙ୍କର ମଥୁରା ଯାତ୍ରା

ବିଗତା ହେଲା ନିଶା ଶୁଭ୍ରବରଣୀ ଉଷା ସୁବେଶା ହସିଲା ହରଷେ,
ଦେଖି ନିଜ ଅତୁଳ ଶୋଭାରାଶି ବିମଳ ବିପୁଳ ଦିଗ-ଅଦରଶେ
ହେ ବୁଧଜନ !

ପ୍ରାଚୀସୁନ୍ଦରୀ ହସି ରଙ୍ଗେ, ରଞ୍ଜିଲା ଉଷାକୁ ସୁରଙ୍ଗେ,
ଜାଗିଣ ନିଦ୍ରାଳସ ଭାଷ କଲେ ପ୍ରକାଶ ସ୍ୱବାସ-ଶାଖାରେ ବିହଙ୍ଗେ
ହେ ବୁଧଜନ ! ୧

---

* ଉଷବଶ୍ଲୋକ "କୃଷ୍ଣ କଂସନଗର ଯିବା ଶୁଣି ବାତର" ସ୍ୱରେ

ଦୁଃଖୀମନେ ଯାମିନୀ ଦିବସଠାରୁ ଯେନ ମେଲାଣି ନେଲା କୋଳାକୋଳି
ଛାଡ଼ି ନଭବକ୍ଷାର ପାଣ୍ଡୁର ଶଶଧର ସଙ୍ଗତେ ଯେନ ତାରାବଳୀ
ହେ ବୁଧଜନ !
ଧୀରେ ଗମିଲା ଅସ୍ତଗିରି, କୁମୁଦିନୀକ ଚିତ୍ତହରି,
ରହୁଁ ମୁଦ୍ରିତେ ଦୁଃଖେ ମିଳାଣ ଶିଳୀମୁଖେ ସମ୍ମୁଖେ କାନ୍ଦିଲେ ଝଙ୍କାରି
ହେ ବୁଧଜନ ! ୨

ବହିଲେ ଧୀରଧୀର ପ୍ରେମେ ଶଚୀପାନାର ସମୀର ଧୀର ଆଲିଙ୍ଗନେ,
କୁସୁମ ପରିମଳ ସଞ୍ଚି ଦିଗନ୍ତ୍ରେଳ ଅକୁଳ କଲା ଅଳିଗଣେ,
ହେ ବୁଧଜନେ !
ଚପଳ ଚପର ଚପର, ଝରିଲା ନିଶିର ଶିଶିର,
ମଧୁଗନ୍ଧେ ଅକୁଳ ଭ୍ରମିଲେ ଅଳିକୁଳ ପ୍ରଫୁଲ୍ଲ ଫୁଲ କାନନର,
ହେ ବୁଧଜନ ! ୩

ନବୀନ ଦିନନାଥ କଲା ହେମେ ରଞ୍ଜିତ ପର୍ବତ ତରୁ ଗୃହ ଶିର,
ଊର୍ଦ୍ଧ୍ୱେ ନୟନ ରଖି ନଳିନୀ ହାସ୍ୟମୁଖୀ ନିରେଖି ଗଗନେ ମିହିର,
ହେ ବୁଧଜନ !
କୁସୁମକୁଳ ଅସ୍ୟ ତୋଳି, ସ୍ନିଗ୍ଧ ଶିଶିର ଅଙ୍ଗେ ବୋଳି,
ହୋଇଲେ ହସ ହସ ଦାନକର ସୁବାସ ଦୋଳାଇ ବାତେ ବୃନ୍ତ-ଦୋଳି
ହେ ବୁଧଜନ ! ୪

ଶର୍ବରୀସହଚରୀ ନିଦ୍ରା ବିଷାଦେ ଫେରି ଶର୍ବରୀ ସଙ୍ଗେ ଗଲା ଗୋପୁଁ,
ପରିହରି ଶୟନ ଉଠିଲେ ଗୋପଜନ ସେବନ କଲା ପରି ଥପୁ
ହେ ବୁଧଜନ !
ଅର୍ଦ୍ଧମୁଦ୍ରିତ ନୟନରେ, ପ୍ରବେଶ ନନ୍ଦ ସଦନରେ,
ବିଷାଦ-ଛାୟାମୁଖେ ଯେହ୍ନେ ଦିବସ ମୁଖେ ଘନ ଖେ ଘୋଟିଣ ସଞ୍ଚରେ
ହେ ବୁଧଜନ ! ୫

ଯେତେକ ବୟସ୍କ ବୃଦ୍ଧା ବାଳା ଯୁବକ ବାଳକ ବାଳିକା ସକଳେ,
ପ୍ରତିବେଶୀ ଯେତେକ ପ୍ରକାଶି ଗୃହଶୋକ ହୋଇଲେ ଲୁଣ୍ଠ ନନ୍ଦଆଳେ
ହେ ବୁଧଜନ !
ନନ୍ଦ ସଦନବାସୀ ଜନ, ଉନ୍ନିଦ୍ରେ ତେଜିଲେ ଶୟନ,
ମାତାଙ୍କ ଚକ୍ରପାଣି ଡାକିଲେ ପିକଜାଣି 'ଜନନି !' ଉଠ ଗୋ ବହନ
ହେ ବୁଧଜନ ! ୬

ଉଠିଣ ଯଶୋମତୀ ତଷାଦେ ପ୍ରାତଃକୃତ ସମାପ୍ତି ସୁତଙ୍କର କଲେ,
ସର ନବଣୀ ଛେନା ଅଦ୍ୱ ସୁଖାଦ୍ୟ ନାନା ବସାଇ କୋଳେ ଭୁଞ୍ଜାଇଲେ
ହେ ବୁଧଜନ !
ସୁଛନ୍ଦିଲେ ଶାମଳ କୁନ୍ତଳ, ବାନ୍ଧିଲେ ଦେଇ ଗୁଞ୍ଜମାଳ,
ନାନାଜାତ କୁସୁମ କଳାପୀ ପୁଚ୍ଛ ଜାମ- ପଲ୍ଲବରେ ନିର୍ମିଣିଲେ ଚୂଳ
ହେ ବୁଧଜନ ! ୭

କର୍ଣ୍ଣେ ଦେଲେ କୁଣ୍ଡଳ ଯଥା ଭାନୁ ମଣ୍ଡଳ ଉଜ୍ଜ୍ୱଳ ନୀଳ ଗଗନରେ,
ଉଜ୍ଜ୍ୱଳ ସିନ୍ଦୂଫଳ ଦେଲେ ନାସିକା ତଳ କଜ୍ଜ୍ୱଳ ଦେଲେ ନୟନରେ
ହେ ବୁଧଜନ !
ଲଲାଟେ ଗୋରୋଚନା ଟୋପା, ଚୂଳର ମୂଳେ ହେମଝୁମ୍ପା,
ନାସାରେ ସୁଚନ୍ଦନ ଶତା କଲେ ଲେଖନ କଣ୍ଠରେ ହାର ଜିଣି ଶମ୍ପା
ହେ ବୁଧଜନ ! ୮

ବନମାଳା ହୃଦେ ଯେହ୍ନେ ଧନୁ ନୀରଦେ ଅଙ୍ଗଦେ ସୁବାହୁ ମଣ୍ଡିତ,
କଟୀତଟେ କିଙ୍କିଣୀ ପୀତାମ୍ବର କାଛେଣୀ ସ୍କନ୍ଧରେ ଉତ୍ତରୀୟ ପୀତ,
ହେ ବୁଧଜନ !
ହସ୍ତରେ ସୁଷମାନିଳୟ, ସୁରତ୍ନ ନିର୍ମିତ ବଳୟ,
ଢାଳାଙ୍କୀ ପୀତବାସ ଏରୂପେ ହେଲେ ବେଶ ମୋହଣ ସକଳ ହୃଦୟ
ହେ ବୁଧଜନ ! ୯

ସମ୍ପୂର୍ଣ୍ଣ ହୋଇଁ ବେଶ ହେଲା ଆସି ପ୍ରବେଶ କ୍ରମଶଃ ବେଳ ଶୁଭମସ୍ତୁ,
କର ଘଟ ସ୍ଥାପିତ ସଧବା ଗୋପୀ ସାଥ ଭ୍ରମତ ବସ୍ତୁର ସମସ୍ତ
ହେ ବୁଧଜନ !
ତାହାଙ୍କୁ ବନ୍ଦାଇଲେ ଆସି, ଆଶୀର୍ବଚନମାନ ଭାଷି,
ହେଲେ ଶୋକେ ବିହ୍ୱଳ ବରଷି ଅଶ୍ରୁଜଳ ଚୁମ୍ବିଲେ ବେନି ମୁଖଶଶୀ
ହେ ବୁଧଜନ ! ୧୦

ଯଶୋଦା ଶୋକାକୁଳେ ଶ୍ୟାମଙ୍କୁ ଘେନି କୋଳେ ଅନଳେ ପ୍ରଦକ୍ଷିଣ କରି
ହେଲେ ଉଭା ମଣ୍ଡନେ ବିଷାଦିତ ବଦନେ ନୟନେ ଝରି ଅଶ୍ରୁଧାର
ହେ ବୁଧଜନ !
ରାମଙ୍କୁ ନନ୍ଦ କୋଳେ ଘେନି, ବସନେ ପୋଛି ନେତ୍ରବେନି,
କହିଲେ, "ଗୋ ମହର୍ଷି ! ଗମନକାଳ ଆସି ବିଗତ ପ୍ରାୟ ହୋଇଲାଣି
ଗୋ ପ୍ରିୟତମେ !" ୧୧

ଏମନ୍ତ କହି ନନ୍ଦ ତ୍ୱରିତେ ମନ୍ଦ ମନ୍ଦ ଚଳିଲେ ହଳୀ କୋଳେ କରି,
ତା ପଛେ ଯଶୋମତୀ କୋଳେ କରି ଶ୍ରୀପତି ଗମିଲେ ନୟନ-ଗତି କରି
ହେ ବୁଧଜନ !
ଯଶୋଦା ପଛେ ଗୋପଜନେ, ଆସିଲେ ସଧୀର ଗମନେ,
କାନ୍ଦିଲେ ଯଶୋମତୀ କାନ୍ଦିଲେ ବ୍ରଜପତି ସକଳେ ମିଳିଲେ କ୍ରନ୍ଦନେ
ହେ ବୁଧଜନ ! ୧୨

ଯଶୋଦା ଗୋକୁଳେଶ ଆସି କଲେ ପ୍ରବେଶ ଆବାସ ସିଂହଦ୍ୱାର ପାଶେ,
ଅଶ୍ୱ ଯୋଚି ଅକ୍ରୂର ଅଣିଲା ରଥବର ସତ୍ୱର ମନର ହରଷେ,
ହେ ବୁଧଜନ !
ନନ୍ଦ କୋଳରୁ ସୀରପାଣି, ରଥରେ ବସାଇଲା ଆଣି,
ପୁଣି କଂସଦୂତର ଯଶୋମତୀ ସମ୍ମୁଖର ସଧୀରେ ପ୍ରକାଶିଲା ବାଣୀ
ହେ ବୁଧଜନ ! ୧୩

"କପାଇଁ ବ୍ରଜରାଣି ! ଶ୍ୟାମକୁ କୋଳେ ଘେନି ଅବ ନୀଳପନେ ରହିଛ,
ଦେଇ ତାଙ୍କୁ ମେଲାଣି ରଥେ ବସାଅ ଅଣି କ ଘେନି ବଳମ୍ବ କରୁଛ
ଗୋ ବ୍ରଜେଶ୍ୱରୀ !
ବ୍ରଜୁ ମଥୁରା ବହୁପଥ, କଂସ ଗୁହାଁଣ ଥିବେ ପଥ,
ହେଲେ କାଳ ବଗତ କୋପିବ ନୃପନାଥ ଵଅର୍ଥ ଘଟିବ ଅନର୍ଥ
ଗୋ ବ୍ରଜେଶ୍ୱରୀ !" ୧୪

ଶୁଣି ଉଗର ବାଣୀ କହିଲ ବ୍ରଜରାଣୀ, "ମେଲାଣି କାହ୍ନୁକୁ ନ ଦେବ,
କଂସର ନିମନ୍ତ୍ରଣ ପାଳିବେ ନନ୍ଦରାଣି ମୁଁ କପାଁ କଂସକୁ ଡରିବ,
ହେ କଂସଦୂତ !
ମୋ ପୁତେ ଅଟନ୍ତି ବାଳକ, କଂସେ ତାଙ୍କର କ ସମ୍ପର୍କ,
କପାଁ ମଥୁରାରସ୍ତୁ କରୁଛନ୍ତି ଅନ୍ୟାୟ ନ ଲୋଡ଼ ଗୋପର ନାୟକ
ହେ କଂସଦୂତ !" ୧୫

ଯଶୋମତୀ ଅରତ ଦେଖିଣ କଂସଦୂତ ବନୀତ ବଚନେ କହିଲ,
"ନ କର ମନେ ଭୟ ପେଷ ବେନି ତନୟ ସମସ୍ତ ଯିବାର ଗଢ଼ିଲ
ଗୋ ବ୍ରଜେଶ୍ୱରୀ !
ଗୁରୁବଦନକୁ ପଥ ଗୁହାଁ, ଥାଅ ଏ ଗୋପପୁରେ ରହି,
ଦେଖି ଧନୁ-ଉତ୍ସବ ଗୁରୁବଦନେ କେଶବ ଅସିବେ ଏ ସତ୍ୟ ଅଟଇ
ଗୋ ବ୍ରଜେଶ୍ୱରୀ !" ୧୬

ଅକ୍ରୂର ଅଶ୍ୱାସନେ ଧଇର୍ଯ୍ୟ ଧରି ମନେ ମଜନେ ରଥପାଶେ ଅସି,
ପୋଛୁ ଶାଶ୍ରୁ ନୟନ ସମ୍ଭାଳଣି ବେଦନ ନନ୍ଦନ ରଥରେ ନିବେଶି,
ହେ ବୁଧଜନ !
ସମ୍ବୋଧି କହିଲ, "ରେ ରାମ ! ତୋଠାରୁ ଅଛି ଶିଶୁ ଶ୍ୟାମ,
ସେ ତ ଅଧୀର ଅତ ନାହିଁ ତାହାର ଭୀତ ଦୁସ୍ତର ଅଟ କଂସ ଧାମ
ରେ ନୀଳାମ୍ବର ! ୧୭

ପ୍ରବାସେ ସାବଧାନ ହେବୁ ରେ ସଙ୍କର୍ଷଣ ଭଅଣ ନ କରିବୁ କଳି,
ଅସଂଖ୍ୟ ଦୁଷ୍ଟାସୁର ଅସଂଖ୍ୟ ନରବର କଂସର ଧାମେ ଛନ୍ତି ମିଳି
ରେ ନେତ୍ରନିଧି !

କରିବୁ ସଦା ଶିଷ୍ଟାଚାର, କହିବୁ ସଦା ମିଷ୍ଟ ଗିର,
ଅରେ ମୋ ଶେଖରଙ୍ଗ ନ ତେଜ ଭ୍ରାତା ସଙ୍ଗ କୁସଙ୍ଗ କରିବୁ ଅନ୍ତର
ରେ ନେତ୍ରନିଧି !" ୧୮

ଅଶ୍ରୁମୟ ଈକ୍ଷଣ ଅକ୍ରୂର ପ୍ରତି ପୁଣ ପ୍ରେରଣ କରି ନନ୍ଦରାଣୀ
ତା କର ଧରି କରେ ଅତି କରୁଣସ୍ୱରେ କାତରେ ପ୍ରକାଶିଲେ ବାଣୀ
ହେ ବୁଧଜନ !

"ଦୂତ ! ମୁଁ ଅଟଇଁ ଦୁଃଖିନୀ, ମୋ ଧନ କେବଳ ଏ ବେନି,
ତୁମ୍ଭେ ଅଟ ମହତ ତେଣୁ କରେଁ ଅର୍ପିତ ମୋ ବଳ ତୁମ୍ଭ କରେ ଆଣି
ହେ କଂସଦୂତ ! ୧୯

ଯିବା କାଳରେ ପଥେ ମୋର ପୁତ୍ରଙ୍କୁ ରଥେ ପୁରତେ ଯତ୍ନେ ବସାଇବ,
କ୍ଷୁଧା ହେଲେ ଆହାର ତୃଷା ହୋଇଲେ ନୀର ଆଗ୍ରହ କରି ତାଙ୍କୁ ଦେବ
ହେ କଂସଦୂତ !

କ୍ଷୁଧା ସେ ନ ପାରନ୍ତି ସହି, ବିଶେଷେ ବଠୋଳ କହ୍ନାଇ
ଆହା ମୋ ବେଣୁପାଣି ତୋହର ମନ ଜାଣି ନବଣୀ କେ ଦେବ ଭୁଞ୍ଜାଇ
ରେ ନେତ୍ରନିଧି ! ୨୦

ନିଜ କରେ ଭୋଜନ ସ୍ୱକରେ ଆଚମନ ନନ୍ଦନ ମୋର ନ ଜାଣନ୍ତି,
ସ୍ନେହେ ବ୍ରଜନନ୍ଦନେ ତାଙ୍କୁ ଭୁଞ୍ଜାନ୍ତି ବନେ ସଦନେ ମୋ କୋଳେ ଭୁଞ୍ଜନ୍ତି,
ହେ କଂସଦୂତ !

ମଥୁରାପୁରେ ନିରଭୟ ହେବେ ମୋ ଅଞ୍ଚଳ ତନୟ
ମୋର ସୁତଙ୍କୁ ଯତ୍ନ କରିବ ଦୂତବର ମୁଁ ଶତ କରୁଛି ବିନୟ
ହେ କଂସଦୂତ !" ୨୧

ଅଜସ୍ର ନୀରବାଶ୍ରୁ  ନନ୍ଦର ଶ୍ୱେତଶ୍ମଶ୍ରୁ  ଧଉତ କରି ବକ୍ଷେ ଖସେ
ଅଦ୍ରି କାଶକୁସୁମ  ଝରଇ ଯଥା ଦ୍ରୁମ  ସଘନ ଶରଦ ପ୍ରତ୍ୟୁଷେ
ହେ ବୁଧଜନ !
କଣ୍ଠେ ଗଦ୍‌ଗଦ୍‌ସ୍ୱରେ ବାଣୀ,  କହିଲେ ଗୋପକୁଳମଣି,
ସୁତଙ୍କ ସୁଧାନନ  ସ୍ନେହେ କରି ଚୁମ୍ବନ  ରଖିଣ ଚିବୁକରେ ପାଣି
ହେ ବୁଧଜନ ! ୨୨

"ରେ ମୋ ପରମ ଜୀବ  ବଳରାମ କେଶବ  ଗୌରବ ବିଭବ ବିଗ୍ରହ
ଯେଜନ ଅକ୍ରୂର ମତ  ହୋଇ ଅନ୍ତବନ୍ମୀତ  ସାକ୍ଷାତ କର ଦଣ୍ଡଧାରୀ
ରେ ରାମ ଶ୍ୟାମ !
ବେନି ତ ଅଳ୍ପ ଶିଶୁ ଅଟ,  ରହିବ ଅକ୍ରୂର ନିକଟ
ଦୁରାଚାର ଅସୁରେ  ଭରି ମଥୁରାପୁରେ  ଅଳ୍ପରେ ପାଇବେ ସଙ୍କଟ
ରେ ରାମ ଶ୍ୟାମ !" ୨୩

ଏକାଳେ ଦାସ ଏକ  ଅଣିଲା ଯେ ସୁପକ୍ୱ  କରକ ରମ୍ଭା ଆଦି ଫଳ,
ପୂର୍ଣ୍ଣ କରି କନକ-  ପାତ୍ରେ ନାନା ପିଷ୍ଟକ  କନକ-କୁମ୍ଭେ ସ୍ୱଚ୍ଛଜଳ
ହେ ବୁଧଜନ !
ଦାସର ହସ୍ତୁଁ ତାହା ଅଣି,  ଥୋଇଲେ ରଥେ ନନ୍ଦରାଣୀ,
କହୁ,"କ୍ଷୁଧା ସମ୍ଭବ  ହେଲେ ପଥେ ଏ ଦ୍ରବ୍ୟ  ଭୁଞ୍ଜିବ ରାମ ବେନୁପ୍ରାଣି
ରେ ନିଜ କରେ !" ୨୪

ଶ୍ୟାମ ଯିବା ସନ୍ଦେଶ  ବ୍ୟାପିଲା ଗୋପଦେଶ  କୁଳିଶ ସଞ୍ଚାର ସଦୃଶ,
ଗୋପ ଗୋପଯୁବତୀ  ପାସୋରି ନିଜ ସ୍ଥିତି  ଧାଇଁଲେ ହୋଇ ଊର୍ଦ୍ଧ୍ୱଶ୍ୱାସ,
ହେ ବୁଧଜନ !
ଗୋପୀଙ୍କ ରାଜୀବ-ଚରଣ,  ଭୁଲିଲା ବରଠା ଗମନ,
ତାହାଙ୍କ ଲଜ୍ଜାଭୟ  ଦେନିଲା କି ବିଦାୟ  ହୃଦୟ ଦେଶରୁ ବସନ,
ହେ ବୁଧଜନ ! ୨୫

କେହୁ ବ୍ରଜସୁନ୍ଦରୀ   କାଖେ କଳସ ଧରି   କୁଞ୍ଚିରି ସରି କରି ଗତ,
ମଣ୍ଡୁଥିଲ ସରଣି   ଶ୍ୟାମ ପ୍ରୟାଣ ଶୁଣି   ସେପଣି କୁମ୍ଭ ରଖି ସେତ
ହେ ବୁଧଜନ !

ଗୁରୁ ନିତମ୍ବ ପୟୋଧରେ,   ନନ୍ଦ ଧାଇଁଲ ଖରତରେ,
ଧାଇଁଲ କୁମ୍ଭ ଘେନି   କେହୁ ଚନ୍ଦ୍ରବଦନୀ   ଅବନୀ କମ୍ପାଇ ପାଦରେ
ହେ ବୁଧଜନ ! ୨୬

କେହୁ ଘେନି ଅଞ୍ଜନ   ରଞ୍ଜୁଥିଲ ଖଞ୍ଜନ— ନୟନ ଅଗେ ବାମ ରଖି,
ଶୁଣି ଶ୍ୟାମ ଗମନ   ହୋଇ ଉଦ୍‌ଭ୍ରାନ୍ତମନ   ଅଞ୍ଜନପାତ୍ରକୁ ଉପେକ୍ଷି,
ହେ ବୁଧଜନ !

ନ ସାରି ଅଞ୍ଜନ ରଞ୍ଜନ,   ଧାଇଁଲ ନନ୍ଦର ସଦନ,
କେହୁ ମାର୍ଜ୍ଜନୀକରି   ଗମନ କଲ ତ୍ୱରି   ପାସୋରି ମନ୍ଦର ମାର୍ଜ୍ଜନ
ହେ ବୁଧଜନ ! ୨୭

କେହୁ ଖରେ ଧାବନ   କରୁଁ ହୋଇ ଉଦ୍‌ଭ୍ରାନ୍ତ   ବସନ ଖସିପଡ଼େ ତଳେ,
କେହୁ ନ କରି ଶେଷ   କେଶପାଶ ବିନ୍ୟାସ   ବିଶେଷ ମନର ଅକୁଳେ
ହେ ବୁଧଜନ !

ଧାଇଁଲ ଯଥା ସୌଦାମିନୀ,   କେଶଦାଳ କି କାଦମ୍ବିନୀ,
ଘନଶ୍ୟାମ ବିଚ୍ଛେଦ   ଲୋତକ ଘନରସ   ହା ଭୂଷ ଘୋର ମନ୍ଦଧ୍ୱନି
ହେ ବୁଧଜନ ! ୨୮

କେ ଡାକେ,"ସଖି ଅସ ପେଦ୍ଧି ଖଣ୍ଡେ ସୁବାସ ବିଶେଷ ବେଶେ କାର୍ଯ୍ୟ କିସ
ଏବେ ଭାରି ସଦୃଶ   ହେବ ପିନ୍ଧିଲ ବାସ   ପ୍ରବାସ ଗଲେ ପୀତବାସ,
ଗୋ ପ୍ରାଣସହି !

ହେବଟି ଏ ବ୍ରଜ ଅନ୍ଧାର,   ଗଲେ ବ୍ରଜର ସୁଖାଧାର,
ଦାରୁଣ ନୃପବର   ଅଟେ ଯମ ବ୍ରଜର   ଅକ୍ରୂର କିଙ୍କର ସେ ତାର
ଗୋ ପ୍ରାଣସହି !" ୨୯

କେ କହେ,"ଗୁଳ ଗୁଳ ଗଡ଼ ଯାଉଛି କାଳ ଚଞ୍ଚଳ ଯନ୍ତ୍ର ଗୋ ନ ଧେବା,
ଗୁଳ ଯିବ ଅକ୍ରୂର ଘେନି ଶ୍ୟାମସୁନ୍ଦର ତାଙ୍କର ଭେଟ ନ ପାଇବା,
ଗୋ ପ୍ରାଣସହି !"

କେ ଡାକେ "ସଖି ରହ ରହ, ନ ପାରେଁ ଗୁଳ ତୋର ସହ,
ଏ ଅଟେ ମନ୍ଦ ବାଟ କର ଗମନ ମଠ ନିକଟ ଅଛି ନନ୍ଦଗୃହ
ଗୋ ପ୍ରାଣସହି !" ୩୦

କେ ଘେନି ଶିଶୁ କୋଳେ ଧାଇଁ ମନ ବଳକେ କେ ତଳେ ଶିଶୁକୁ ପକାଇ,
କାହାସ୍ତନ୍ ଅଞ୍ଚଳ ଖସି ଲୋଟିଣ ତଳ ଯୁଗଳ ଚରଣ ଛନ୍ଦଇ
ହେ ବୁଧଜନ !
ଖସି ପଡ଼ିଲା ଅଳଙ୍କାରେ ତଳେହେଁ କେହି ନ ଆଦରେ,
ବିଗଳିତ କବରୀ ପୁଷ୍ପେ ଲୋଟେ କାହାର ଉଦ୍ଧାର କୁସୁମ ନିକରେ
ହେ ବୁଧଜନ ! ୩୧

ଯେତେ ବ୍ରଜବାଳକ କରଣି ଡାକହାକ ଉଗ୍ରକ୍ରମନେ କରି ଗତ,
ଧାଇଁଲେ ଯୂଥେ ଯୂଥେ ରଖି କରି ପଶ୍ଚାତେ ଈପ୍ସିତେ ଯୁବକ ଯୁବତୀ
ହେ ବୁଧଜନେ !
. ଏରୂପେ ଗୋକୁଳ ନିବାସୀ, ମିଳିଲେ ନନ୍ଦଗୃହେ ଆସି,
ଠେଲିଠେଲି ନିବିଟେ ହେଲେକ ଯିବା ବାଟେ ବକଟେ 'ଉଠ' 'ଉଠ' ସ୍ଥାନି
ହେ ବୁଧଜନ ! ୩୨

କେହି ଦେଖିବା ଆଶେ ଘନଜନତା ପାଶେ ମଶକ ସଦୃଶେ ଭ୍ରମଇ
ଉନ୍ନତଗ୍ରୀବ ହୋଇ ପ୍ରପଦେ ଭର ଦେଇ କେହି ବା ନେତ୍ର ବିସ୍ତାରଇ
ହେ ବୁଧଜନ !

କେହି ଅରୋହେ ଅଟ ଘରେ, ସୁଦୀର୍ଘ ପାଦପଶିଖରେ,
କେହି ଏବା ନିଃଶ୍ରେଣୀ ଉଦ୍ଧଟଟ ଅଣି ଅରୋହେ ଅଟ୍ଟାଳିକାରେ
ହେ ବୁଧଜନ ! ୩୩

ମିଳିଣ ବ୍ରଜଜନ    ଶ୍ୟାମ ସୁଧାଲ୍ପପନ    ନୟନପଥେ କଲେ ପାନ,
ଅନ୍ୟ ଇନ୍ଦ୍ରିୟମାନେ ସେ ସୁଧାପ୍ରଲୋଭନେ ନୟନେ ଯାଇ କଲେ ସ୍ଥାନ
ହେ ବୁଧଜନେ !
ଏକାଳେ କଂସର ଡଗର,    ଧୀରେ ଗୃହିଲ ରଥ୍ବର,
ହରଷମସୃଣତାରେ    ଜନଗହଳପଥେ    ଅଚ୍ୟୁତେ ଘେନିଣ ସଙ୍ଗର
ହେ ବୁଧଜନ ! ୩୪

କହି "ହା ବେଣୁପାଣି !" ମୂର୍ଚ୍ଛିତା ନନ୍ଦରାଣୀ, ଧରଣୀତଳେ ପଡ଼ିଲେଟି,
'ହା ରାମ' 'ହା ଗୋବନ୍ଦ'   କହି କାନ୍ଦିଲେ ନନ୍ଦ   ବସିଣ ଯଶୋଦା ନିକଟ
ହେ ବୁଧଜନ !
କପାଳେ କରି କରାଘାତ,    କହି "ହା କି କଲ୍ ବିଧାତଃ"
କାନ୍ଦିଲେ କୋଳାହଳେ  ବ୍ରଜବାସୀ ସକଳେ  ଶୋକଲେ କରି ଅଶ୍ରୁପାତ
ହେ ବୁଧଜନେ ! ୩୫

ଥୋକେ ବରଜଜନ  କରି କରି କ୍ରନ୍ଦନ  ଯଶୋଦା ନନ୍ଦ କର ଧରି,
ଫେରିଲେ ଧୀର ଧୀର  କହି ସାନ୍ତ୍ୱନାଗିର  ନନ୍ଦର ବାସ ଲକ୍ଷ୍ୟ କରି
ହେ ବୁଧଜନ !
ଶ୍ରୀହୀନ ନନ୍ଦର ଭବନ,    ଯେସନ ନଳିନ କାନନ,
କମଳାନନ୍ଦକାରୀ    ଚସ୍ରେର ଅବାରି    ଯେ କାଳେ କରନ୍ତି ଗମନ
ହେ ବୁଧଜନ ! ୩୬

ଯେବେ କ୍ରୂର ନିଷାଦ  ଶାବକେ କରି ବନ୍ଧ ଅନନ୍ଦେ ଗମେ ନିଜ ବାସେ,
ଶୋକେ ହୋଇ କାତର  ଙ୍କରନ୍ତି ଅର୍ତ୍ତସ୍ୱର  ବସିଣ ଶୂନ୍ୟନୀଡ଼ ପାଶେ
ହେ ବୁଧଜନେ !
ଯେସନେ କପୋତୀ କପୋତ,    ଶାବକ ଶୋକରେ ଶୋକାର୍ତ୍ତ,
ତେସନେ ଯଶୋମତୀ   ଗୋପାଳକୁଳପତି  କାନ୍ଦନ୍ତି ହୋଇଣ ଅରତ
ହେ ବୁଧଜନ ! ୩୭

ଅକସ୍ମାତେ ଆକାଶ   କଲା ଶବ୍ଦ ପ୍ରକାଶ   ନାଦିଲା ଗୋବର୍ଦ୍ଧନ ଗିରି,
କମ୍ପିଲା ଗୋପପୁରୀ   ଗମ୍ଭୀର ଶବ୍ଦ କରି   ବର୍ଷିଲା ଶୂନ୍ୟ ରଙ୍ଗବାରି
ହେ ବୁଧଜନ !
ଦେଖି ଏମନ୍ତ ବୈପରୀତ୍ୟ,   ହେଲେକ ସକଳେ ଚକିତ,
ବୁଧେ କର ସ୍ମରଣ   ଚିନ୍ତାମଣିଚରଣ   କରଣ ଭକ୍ତିମନ୍ତ ଚିତ୍ତ
ହେ ଅବିରତେ । ୩୮



## ଷଷ୍ଠ ଛାନ୍ଦ

ରାଗ—ଗୁଣ୍ଡି *

## ଗୋପୀଙ୍କର ଖେଦ

ଶୋକବିଷଣ୍ଣା ଗୋପିନୀ,   କୁହେଳୀରେ କି ନଳିନୀ,
କମଳଦଳ-ଲୋଚନେ ପୂରିତ ବାରି,
କହନ୍ତି କୋମଳ ସ୍ୱର,   ବିନୟରେ ସମ୍ବୋଧନ୍ତି,
ଧରି ରଥାଙ୍ଗ ଗଦ୍‌ଗଦେ ବାଣୀ ଉଚ୍ଚାରି,
"ବ୍ରଜବନ୍ଧୁ ! କଂସନଗରେ,
କେମନ୍ତେ ଯାଉଛ ଛାଡ଼ି ଗୋପୀନିକରେ । ୧

କି ଦୋଷେ ଅପରାଧିନୀ,   ଅମ୍ଭେ ବ୍ରଜକାମିନୀ,
କୃପାସିନ୍ଧୁ ! ଫିଙ୍ଗୁଅଛ ଶୋକସାଗରେ,
ନାହିଁ କି ଚିତ୍ତରେ ଦୟା,   ନାହିଁ କି ହେ ଭଲେ ମାୟା,
କହିବୁଁ ଏ ବିପତ୍ତି କାହା ଆଗରେ,
ବାରିନିଧି ବାରିବିହୀନ
ଧନେଶ ଅଳକାପତି ଅତୀବ ଦୀନ । ୨

---

* ବୈଦେହୀଶ ବିଳାସ "ବିଚଳକୁ ଅଲଙ୍ଘନ କରି ଜାହ୍ନବୀ ଶୋଭନ" ରାଗେ

ତୁମ୍ଭଙ୍କ କର ଜୀବକା, ହେଲୁଁ ତୁମ୍ଭର ସେବକା,
ବିକା ଅମ୍ଭ ମନ ପ୍ରାଣ ତୁମ୍ଭ ଶ୍ରୀପଦେ ।
ଲଭିଣ ତୁମ୍ଭଙ୍କ କରେ, ଭାଳିଲୁଁ ଏ ତ୍ରିଲୋକରେ,
ଅମ୍ଭେ ଅତି ଭାଗ୍ୟବତୀ ଶ୍ୟାମସମ୍ପଦେ,
ତୁଚ୍ଛ କରି କଳଙ୍କଭୀତ,
ରଖିଲୁଁ ତୁମ୍ଭ ରାଜୀବ-ଚରଣେ ମତ । ୩

ଏକ ଦିନ ବ୍ରଜବନ୍ଧୁ, ଯିବ ତେଜି ବ୍ରଜବଧୂ,
ନ ଥିଲୁଁ ଭାଳି ଏ କଥା କାଳେ ସ୍ୱପନେ,
ଅମ୍ଭଙ୍କ ବିଧାତା ବାମ, ତେଣୁ ବିନା ଘନଶ୍ୟାମ,
ଯାଉଅଛ କଂସଧାମ ନିର୍ଦ୍ଦୟମନେ,
ସୁକୋମଳହୃଦ ଏଥର,
ଅମ୍ଭ ଭାଗ୍ୟଦୋଷୁଁ କିବା ହେଲା ପଥର । ୪

କାହୁଁ ଏ ଦାରୁଣପଣ, ଶିଖିଲ ହେ ବ୍ରଜପ୍ରାଣ,
କେମନ୍ତେ ସ୍ନେହ ମମତା ଗଲା ପାଶୋରି
ତେଜୁଅଛ ପିତା ମାତା, ତେଜୁଛ ବ୍ରଜବନିତା,
ତେଜୁଛ ଯମୁନା ବୃନ୍ଦାବନ କିଶୋରୀ,
ବିପନ୍ନ ବିଟପୀ ପ୍ରକାର,
ହେବୁଁଟି ତୁମ୍ଭ ବିରହେ ଗୋପିନୀବାର । ୫

ତେଜିବାକୁ ଗୋପବଧୂ, ଯଦି ମନେ ଥିଲା ବନ୍ଧୁ !
ଲଗାଇଲ କିପାଁ ଏଡ଼େ ପ୍ରୀତି ବରଜେ ?
ଦେଲ କରେ ସୁଧାଙ୍କୁର, ନେଉଛ ପୁଣି ତା ହରି,
ଅବଗୃସ୍ଥ ଜନ ପର ଭାଳ ସହଜେ ,
ତୁମ୍ଭେ ଅଟ ବିବେକମଣି,
ଅଯଶ ଅରଜ କିପାଁ ମୁରଲୀପାଣି । ୬

ତୁମ୍ଭ ପ୍ରୀତି-ସୁଧା ଅଶେଷ, ଲୋଭେ ନ ରହିଲୁଁ ବାସେ,
ଲଜ୍ଜା ଭୟ କୁଳ ମାନ ମୂଳ ନାଶିଲୁଁ,
ବୁଡ଼ି ନାବେ ପାଦ ଦେଲୁ ଜନ ପରି ଦଶା ହେଲା,
ନାବ ହରାଇଣ ଏବେ ଜଳେ ଭାସିଲୁଁ,
ପ୍ରୀତି-ଲତା କରି ରୋପଣ,
ଛେଦୁଛ ତାହା ଏହା କି ବିବେକପଣ ? ୭

ଯେବେ ଘନେ ଆଖଣ୍ଡଳ, ବର୍ଷିଲା ପ୍ରବଳ ଜଳ,
ରଖିଲ ବ୍ରଜମଣ୍ଡଳ ଟେକିଣ ଗିରି,
ଦେବାକୁ ଏହି କଦନ, ଧରିଲ କି ଗୋବର୍ଦ୍ଧନ,
ରଖିଲ ଜୀବନେ ଯେତେ ବ୍ରଜ ଅଭାଗୀ,
ରୁଗ୍ଣ ବନ୍ଦୀ କାରାରେ ଯଥା,
ହୁଏ ରକ୍ଷିତ ନୃପାଦେଶେ ସର୍ବଥା । ୮

ତୁମ୍ଭ ବିନା ବୃନ୍ଦାବନ, ହୋଇବ ମରୁ ସମାନ,
ଶତକୋଶ ହେବଟି ଯମୁନାତଟିନୀ,
ହେବ ଗୃହ କାରାଗାର, ଭୂଷଣ ଭାର ପ୍ରକାର,
ଅସର ହେବ ଅମ୍ବର ଦିବା ଯାମିନୀ,
ମଳୟଜ ହେବ ଦହନ,
କୁସୁମଶୟନ ହେବ କଣ୍ଟକବନ । ୯

ହେବ କାଳ କାଳ ପରି, ଆହାର ଗରଳ ସରି,
ସରିଯିବ ବ୍ରଜପୁରୀ ସୁଖ ଉଲ୍ଲାସ,
ଶୂନ୍ୟ ହେବ ଦିଗଚୟ, ହେବ ବ୍ରଜ ତମୋମୟ,
ହେବ ରୂପ ଯଥା ହିମେ ପଦ୍ମପଲାଶ,
ସବୁ ସୁଖ ଦେଇଛ ସାରି,
କେମନ୍ତେ ବଞ୍ଚିବୁଁ ଆମ୍ଭେ ବରଜନାରୀ ।" ୧୦

ଗୋପୀଙ୍କି ପଦ୍ମନୟନ, କହନ୍ତି ସୁଧାବଚନ,
"ନ କର ଭାବନା ଅଗୋ ବ୍ରଜଲଳନା,
ଯାଉଛୁ ମୁଁ ମଧୁବଣେ, ମାନସାକୁଳେ ବରଷେ,
ଧନୁଯାଗ ଦେଖି କଂସେ କରି ବନ୍ଦନା,
ଆସିବି ମୁଁ ଗୃହ ଦିବସେ,
ନ କର କରକବନ୍ତୀ ଚିନ୍ତା ମାନସେ । ୧୧
ତୁମ୍ଭର ବିରହେ ଯଦି, ମୋ ଜୀବନ ରସନିଧି,
ବଧିବ ତେବେ ସାକ୍ଷାତ କରିବ ଆସି,
ନଭୁଲିବା ତୁମ୍ଭ କହ୍ନାଇ ଅଜି ଏ ଜନମ ପାଇଁ,
ଯେଣିଇ ମେଲଣି ସିନା ପ୍ରୀତିଲାଳସି !
ପ୍ରତିକୂଳବାତେ ଯେସନ,
ଚଳେ କେତୁ ତେସନ ମୁଁ କରେ ଗମନ । ୧୨
ରଖିଛ ଯେଉଁ ସ୍ନେହତ, ମୋହଠାରେ ପ୍ରିୟବ୍ରତ !
ରଖ ସେ ମତି ଭକତ ପତିଚରଣେ,
ହୃଦରେ ନିତ ଅର୍ଚ୍ଚନା, ପତିଙ୍କି ପଦ୍ମନୟନା,
କରି ସୁଖ ପ୍ରୀତି ଦିଅ ତାହାଙ୍କ ମନେ,
ପତିଙ୍କି ମୋ ସ୍ୱରୂପେ ଭାଳି,
କର ତାଙ୍କୁ ସଦା ସେବା ବରଜବାଳି ! ୧୩
ପତିର ଅଜ୍ଞାକାରିଣୀ, ପତିର ତୋଷଦାୟିନୀ,
ଯେ କାମିନୀ ସେ ତ ଧନ୍ୟା ଅଟେ ଜଗତେ,
କର ନିତ ପତିପୂଜା, ସରଳପ୍ରେମେ ସୁଭୁଜା !
ମୋତେ ପୁଣି କର ଧ୍ୟାନ ମନେ ନିରତେ,
ମୋର ପ୍ରୀତି କରିବ ଲଭ,
ନୈକୁଣ୍ଠ ସଦନେ ଛାଡ଼ି ବିରସଭାବ ।" ୧୪
କେହୁ ଗୋପୀ ହରି କର, କେହୁ ଚିବୁକ ତାଙ୍କର,
ଧରି ନୟନରୁ ମୁଞ୍ଚି ଅଶ୍ରୁ-ଆସାର,

ଶୋକଭଙ୍ଗସ୍ୱରେ ବାଣୀ, କହିଲେ ରମଣୀମଣି,
"ନ କରିବ ବନ୍ଧୁଧନ ବ୍ରଜ ଅନ୍ଧାର,
ତୁମ୍ଭ ବିନା ଗୋପୀଙ୍କ ଯାମ,
କୋଟିଯୁଗ ସମ ସିନା ହେବ ହେ ଶ୍ୟାମ !" ୧୫
ଶ୍ୟାମ ପାଶରୁ ବିଦାୟ, ଘେନିଲେ ଗୋପୀନିଚୟ,
କରି ଗତି ଅତି ମନ୍ଦ ମନ୍ଦ ବିରସେ,
ଜୀବନଠାରୁ ଅନ୍ତର, ହେଲା କି ଅତି ଦୁଷ୍କର,
ଶରୀର ଲାବଣ୍ୟପୂର୍ଣ୍ଣ ନବବୟସେ,
ନେତ୍ରୁଁ ଘନେ ଝରିଲା ବାରି,
ଗୃହପଥ ବିପଥ ନ ପାରିଲେ ବାରି । ୧୬
ମାନସ ଅତି ବିକଳ, ଦୁର୍ବଳ ପାଦ ଅଚଳ,
ହେଉଁ ନୀପଚ୍ଛାୟାତଳେ ବସିଲେ ବାଳୀ,
ତାଙ୍କ ସାଶ୍ରୁନେତ୍ରଚୟ, ଶ୍ୟାମରଥେ ହେଲେ ଥୟ,
କୃଷ୍ଣ କଥା କେବଳ ସେ ହୋଇଲେ ଭାଳି,
ବୁଧେ ମଣ୍ଡ ବନ୍ଦ୍ୟସବିତେ,
ଶ୍ରୀ ଚନ୍ଦ୍ରାମଣିଚରଣ ଭ୍ରମର ଚିତ୍ତେ । ୧୭



## ସପ୍ତମ ଛାନ୍ଦ

ରାଗ—କାମୋଦୀ *

## ଗୋପ ବାଳକଙ୍କ ଖେଦ

ସଧୀରେ କଂସଦୂତ ଗୁଳା ନିଅନ୍ତେ ରଥ ତ୍ୱରିତ ଯେତେ ଗୋପସୁତେ,
ନୟନ ନୀର ଢାଳି ରଥପଥ ଓଗାଳି ଗାଳି ଦେଇଣ କଂସଦୂତେ,
ହେ ବୁଧଜନ !

* ଲବଙ୍କଲ୍ଲୋଳ "କୃଷ୍ଣ କଂସନଗର ଯିବା ଶୁଣି କାତର" ରାଗେ

ଧରିଲେ ରଥାଙ୍ଗ ରଥର, ଭାଷି, "ରେ ନିଷ୍ଠୁର ଅକ୍ରୂର,
ନ ଦେବୁଁ ରଥ ଛାଡ଼ି ନ ଦେବୁଁ ପଥ ଛାଡ଼ି ବାହୁଡ଼ିଯାଅ ମଧୁପୁର
ହେ କଂସଦୂତ ! ୧

ମନେ ଅଛି କି କରି ସହଜେ ନେବ ଧରି ଗୋକୁଳରଖୁଆଳେଶ୍ୱରେ,
ଆମ୍ଭ ଏ ଅପଘନ ଯେତେ ଭାଳ ବହନ ଜୀବନ କରିବ ବଶ୍ୱରେ,
ହେ କଂସଦୂତ !
କହୁଛୁଁ ଘେନ ହେ ବଚନ, ନ ନିଅ ନନ୍ଦର ନନ୍ଦନ,
ନୋହିଲେ ଏହି ଦଣ୍ଡେ କରିବୁଁ ଖଣ୍ଡ ଖଣ୍ଡ ଦଣ୍ଡରେ ପ୍ରହାରି ସ୍ୟନ୍ଦନ
ହେ କଂସଦୂତ !" ୨

ଅଳ୍ପ ହସି ଉତର କହେ, "ନାହିଁ କି ଡର ତୁମ୍ଭର ରାଜା କଂସାସୁରେ,
ଜାଣିଲେ କଂସରାଣ ତୁମ୍ଭ ଏ ଦୁଷ୍ଟପଣ ତକ୍ଷଣ ଆସି ଗୋପପୁରେ·
ହେ ବ୍ରଜପୁତେ !
ତୁମ୍ଭଙ୍କୁ ଘେନିଯିବ ଧରି, ପୃଷ୍ଠରେ ବେତ୍ରାଘାତ କରି,
ଏବେ ମୋ ବୋଲ୍ କରି ଲେଉଟ ଗୋପପୁରି ପାସୋରି ତୁମ୍ଭ ଗିରିଧାରୀ
ହେ ବ୍ରଜସୁତେ !" ୩

ଭାଳି ଶ୍ୟାମ ବଦନେ ନେତ୍ର ଗୋପନନ୍ଦନେ କହନ୍ତି, "ଭାଇ କାହ୍ନୁ ଅସ,
ଦେଖନା ଶୂନ୍ୟରଥ ଧରୁ ମଥୁରା-ପଥ କ୍ରୂରଦୂତ ବାହୁଡ଼ି ସ୍ୱବାସ
ହେ ଭାଇ କାହ୍ନୁ !
ଅସ ଆମ୍ଭର ସ୍କନ୍ଧେ ବସ, ଆମ୍ଭର କି କରିବ କଂସ,
ତୁମ୍ଭେ ଥିଲେ ସମୀପେ ମଥୁରାପୁର ନୃପେ କପାଁ ବା ହେବ ଆମ୍ଭ ନାଶ
ହେ ଭାଇ କାହ୍ନୁ !" ୪

ଛଳ ଛଳ ନୟନ କରି ପଦକମଳନ ... କହନ୍ତି କୋମଳେ,
" ଦୂତ ନୁହଇ ଦୋଷୀ ତାହାଙ୍କୁ ଅଛୁ ପେଷି ପ୍ରତାପୀ କଂସ ଏ ମଣ୍ଡଳେ
ହେ ସଖାବୃନ୍ଦ !

ନ କର କିଛି ଚିନ୍ତା ମନେ, ଆସିବ ଫେରି ଗୃହ ଧନେ,
ଆସିଛି ବହୁବାଟ ହେଉଛି ପାଦେ କଷ୍ଟ ଲେଉଟ ଏବେ ବୃନ୍ଦାବନେ
ହେ ସଖୀବୃନ୍ଦ !" ୫

ଯେତେ ଗୋପତନୟେ କର ଯୋଡ଼ି ବିନୟେ କହନ୍ତି ସଜଳନୟନେ,
"ତୁମ୍ଭର ବଂଶୀସ୍ୱନ ନ ଶୁଣି ବତ୍ସାଗଣ ତୃଣ ତ ନ ଚରିବେ ବନେ
ହେ ଭାଇ କାହ୍ନୁ !
ବନରେ ପାଇ ତାହା ସଙ୍ଗ, କ୍ରୀଡ଼ିବୁଁ କରି ନାନାରଙ୍ଗ,
ବନ୍ୟ ପତ୍ର କୁସୁମ ଆଣି ବିରଚି ଦାମ ସାଜିବୁଁ ତାହାର ଶ୍ୟାମାଙ୍ଗ
ହେ ଭାଇ କାହ୍ନୁ ! ୬

ବୋଲ କି ସୁଖେ ଅଜ ସଖୀରତନେ ତେଜି ଫେରିବୁଁ କହ୍ନାଇ ! ବରଜେ,
ତେମନ୍ତେ ରଖିଥିଲେ ରହିବେ ନିଜ ଅଳେ ତେଜିଣ ରଖିଥିଲ ରାଜେ,
ହେ ଭାଇ କାହ୍ନୁ !
ଉତ୍ସବ ଦେଖାଇବା ପାଇଁ, ଆମ୍ଭଙ୍କୁ ସଙ୍ଗେ ନିଅ ଭାଇ,
ଆମ୍ଭଙ୍କୁ ବ୍ରଜେ ରଖି ଯିବ ହୋଇ ଏକାକୀ ଏହା କି ସୁନ୍ଦର ଦିଶଇ
ହେ ଭାଇ କାହ୍ନୁ ! ୭

ତାହାକୁ ରାଜା ସାଜି ହେବୁଁ ତା ଗଜ ବାଜୀ କାରଜୀ ମନ୍ତ୍ରୀ ପ୍ରତିହାରୀ,
ତାହାକୁ ଉପହାର ଦେବୁଁ ନବଣୀ ସର ପତର ଫୁଲ୍ଲ ପତ୍ରବାର,
ହେ ଭାଇ କାହ୍ନୁ !
ତେ ଅମ୍ଭ ମଧ୍ୟରେ ବିରାଜ, ପ୍ରେମେ ଭୁଞ୍ଜିବ ବନ୍ୟଭୋଜୀ,
ତାହାକୁ ଭୁଞ୍ଜାଇବୁଁ ତାହା ଉଚ୍ଛୁଁ ଭୁଞ୍ଜିବୁଁ କୌତୁକ ବିବିଧ ସରଜ
ହେ ଭାଇ କାହ୍ନୁ ! ୮

ପତ୍ର ତାହାଳୀ ରଚି ତାହା ସଙ୍ଗରେ ନାଚି ଗାଇବୁଁ ଗୀତ ନାନାଛନ୍ଦେ,
କିଏ ହୋଇବ ସାଦୀ କିଏ ହେବ ନିଷାଦୀ ବସିଣ ବ୍ରଜବାଳ ସ୍କନ୍ଧେ
ହେ ଭାଇ କାହ୍ନୁ !

କାହାକୁ କଦମ୍ବର ଡ଼ାଳେ, ବାସର ସଜବନ ଢାଳେ,
ଦୋଳାସନେ ମଣ୍ଡାଇ କରିଣ ଗୀତ ଗାଇ ହୋଇବେ ସୁଖୀ ବ୍ରଜବାଳେ
ହେ ଭାଇ କାହ୍ନୁ !" ୯

ଶ୍ୟାମ ପଦ୍ମଲୋଚନ-କୋଣେ ଦେଲା ଦର୍ଶନ ନୟନ-ବାରିଧାରା ବେନି,
ବଦନ ବଂଶୀଧାରୀ ପୋଛିଣ ନେତବାରି କନକ ଉତ୍ତରୀୟୁ ଘେନି
ହେ ବୁଧଜନ !
କୋମଳେ କହିଲେ ବଚନ, "ବତ୍ସାଏ ତେଜିବେ ଜୀବନ,
ଯଦି ହେ ଗୋପବାଳେ ମୋରସଙ୍ଗେ ସକଳେ କରିବ ମଥୁରା ଗମନ
ହେ ସଖାବୃନ୍ଦ ! ୧୦

ନ କର ଦୁଃଖ ମନେ ଲେଉଟି ବୃନ୍ଦାବନେ ବିଳମ୍ବ ହେଉଅଛି କାଳ,
ହେଉଥିବେ ଅକୁଳ କ୍ଷୁଧାରେ ବତ୍ସାକୁଳ ତାହାଙ୍କ ପ୍ରାଣ ବ୍ରଜବାଳ
ହେ ସଖାବୃନ୍ଦ !
ନ ହେଲେ ବିଧି ପ୍ରତିକୂଳ, ଫେରି ମୁଁ ଆସିବି ଚଞ୍ଚଳ,
ମୋର ଆସିବାଯାଏ ହୋଇ ମୋର ପରାୟେ ଚାରଣ କର ବତ୍ସାକୁଳ
ହେ ସଖାବୃନ୍ଦ !" ୧୧

ସେକାଳେ ଅନୁରାଗେ ଆସିଣ କୃଷ୍ଣ ଆଗେ ସସ୍ନେହେ ବ୍ରଜସୁତ ଏକ,
କହିଲା, "ବହୁଦୂର ବ୍ରଜରୁ ମଧୁପୁର ଉତ୍ତୁର ହେଲାଣି ଅଧିକ,
ହେ ଭାଇ କାହ୍ନୁ !
ଏ ଦୀର୍ଘପଥ ଯିବାବେଳେ, ହୋଇବ କଷ୍ଟ କ୍ଷୁଧାନଳେ,
ଆଣିଛୁ ସର ଅନ୍ନ ଷଡ଼ରସ ବ୍ୟଞ୍ଜନ ଭୋଜନ କର ନୀପମୂଳେ
ହେ ଭାଇ କାହ୍ନୁ !" ୧୨

ଧୀରେ ନନ୍ଦନନ୍ଦନ ରଥୁଁ ଅବରୋହଣ କରିଣ ତାଙ୍କୀ ସହିତ,
ଗୋପ ବାଳକ ମେଳେ ଧୀରେ କଦମ୍ବ ମୂଳେ ହୋଇଲେ ଯାଇ ଉପନୀତ
ହେ ବୁଧଜନ !

ମିଳି ସକଳ ବ୍ରଜସୁତେ, ତାହାଙ୍କୁ ଭୁଞ୍ଜାଇଲେ ହସ୍ତେ,
ସାରଣ ଆଚମନ ବନମାଳା ରଚନ କରଣ ଦେଲେ ବେନି ଭ୍ରାତେ
ହେ ବୁଧଜନ ! ୧୩

ଭସି ନୟନ ଜଳେ ମେଲଣି ବ୍ରଜବାଳେ ଧେନାଲେ ଦେଇ ଆଲିଙ୍ଗନ,
ପୁଣି ଶ୍ୟାମର କର ଧରି ବାଳନିକର କହିଲେ କାତର ବଚନ
ହେ ବୁଧଜନ !

"ଗଲା ସକଳ ସୁଖ ସର, ଅନ୍ଧାର ବରଜ ନଗର,
ଶୂନ୍ୟ ଏ ବୃନ୍ଦାବନ ଗୋରବର ବିହୀନ ରତନ ପିଞ୍ଜରାର ପର
ହେ ଭାଇ କାହ୍ନୁ !" ୧୪

କହନ୍ତି ବଂଶୀଧର, "ମନେ ଚିନ୍ତା ନ କର ସତ୍ୱର ଆସିପାରେଁ ଫେରି,
ଧେନା ମୋର ବଚନ ସକଳେ ପ୍ରତିଦିନ ସ୍ମରଣ କରିବ ବାଛୁରି
ହେ ସଖାବୃନ୍ଦ !

ମୋ ବିନା ଅତ୍ୟନ୍ତ ଦୁଃଖିନୀ, ହୋଇଅଛନ୍ତି ମୋ ଜନନୀ,
ତାହାଙ୍କୁ ମାତା ମାତା ନନ୍ଦଙ୍କୁ ପିତା ପିତା ଡାକିଣ ମାଗିବ ନବଣୀ
ହେ ସଖାବୃନ୍ଦ ! ୧୫

ମୋ ପରି ବେଶ ଧରି ବଂଶୀ ବଜାଇ କରି ତାଙ୍କର ଅଗରେ ନାଚିବ,
ଗୋପୀଙ୍କ ପାଶେ ଯାଇ ବିବିଧ ଗୀତ ଗାଇ ନାଚିଣ ନବନୀ ଯାଚିବ
ହେ ସଖାବୃନ୍ଦ !

ଠିଆ ହୋଇଣ ନୀପମୂଳେ, ତ୍ରିଭଙ୍ଗ ଛନ୍ଦେ ନଦୀକୂଳେ,
କରିବ ବଂଶୀନାଦ ତୋଳିବ କୋକନଦ ସନ୍ତରି କାଳିନ୍ଦୀର ଜଳେ
ହେ ସଖାବୃନ୍ଦ !" ୧୬

ପ୍ରବୋଧ କଥା କହି ବସିଲେ ରଥେ ଯାଇ ମୋହିଣ ବ୍ରଜବାଳ ମନ,
ଚଳାଇବେ ତୁରଙ୍ଗେ ଗମିଲେ ବାୟୁବେଗେ ଧୂଳିରେ ଆଚ୍ଛାଦି ଗଗନ
ହେ ବୁଧଜନ !

ବ୍ରଜସୁନ୍ଦରୀ ବ୍ରଜବାଳେ, ଗୃହେଁ ରହିଲେ ଘୋର ତୋଳେ,
ଶରୀର ସ୍ପନ୍ଦହୀନ ପୁତ୍ତଳିକା ଯେସନ ଜୀବନ୍ତ ବ୍ୟକ୍ତ ଅଶ୍ରୁଜଳେ
ହେ ବୁଧଜନ ! ୧୭

କ୍ରମେ କ୍ରମେ ସନ୍ଦ୍ୟନ ଅନ୍ତକମି ନୟନ ହୋଇଲା ଲୀନ ଦିଗ୍‌ବଳୟେ,
ବ୍ରଜବଧୂନିକର ଫେରିଲେ ଗୋପପୁର ଅବର ବରଜୀବନସ୍ୱେ
ହେ ବୁଧଜନ !

ଶୋକାଶ୍ରୁ ବରଷେ ନୟନ, ମୁଖରେ ନ ଆସେ ବଚନ,
ବ୍ରଜକୁ ମୁଖ କରି ଯିବାକୁ ବ୍ରଜେ ଫେରି କାହାନ୍ତି ନ ଚଳେ ଚରଣ
ହେ ବୁଧଜନ ! ୧୮

କାନ୍ଦିଲେ ବ୍ରଜବାଳେ ବସି କଦମ୍ବମୂଳେ ଅକ୍ରୂରେ ନିର୍ଦ୍ଦୟ ପରି,
କାନ୍ଦିଲେ ବ୍ରଜନାରୀ କପାଳେ କର ମାରି ଝରାଇ ନୀରବାଶ୍ରୁଧାର
ହେ ବୁଧଜନ !

କାନ୍ଦିଲେ ଶାଖାରେ ବିହଙ୍ଗେ, କାନନେ କାନ୍ଦିଲେ କୁରଙ୍ଗେ,
କଳକଲରେ ଯମୁନା କାନ୍ଦିଲା ସ୍ରୋତସ୍ୱିନୀ କାନ୍ଦିଲେ କମଳରେ ଭୃଙ୍ଗେ
ହେ ବୁଧଜନ ! ୧୯

ମଳିନ ଦିଗଗଣ ମଳିନ ବୃନ୍ଦାବନ ହୋଇଲା ଝଟିକା ଧୂଳିରେ,
ନୀପ ତମାଳମାଳ ଶିଶିର-ଅଶ୍ରୁଜଳ ଢାଳିଲେ ନୀରବେ ଭୂମିରେ,
ହେ ବୁଧଜନ !

ଉତ୍ସବହୀନ ବ୍ରଜଧାମ, ବୃନ୍ଦାବନେ ବୃନ୍ଦାଳୟ ସମ,
ଚୋପରେ ଯେତେ ଜନ ଛାଡ଼ି ଅନ୍ୟ ବଚନ କେବଳ ଭଜିଲେ 'ହା ଶ୍ୟାମ'
ହେ ବୁଧଜନ ! ୨୦

କଂସଦୂତ ସଙ୍ଗରେ ମିଳି କଂସ ନଗରେ ଲୀଳା ରଙ୍ଗରେ ବେନି ଭାଇ,
ମଲ୍ଲ ମାତ୍ତଙ୍ଗ ଆଦି ମତ୍ତମାତଙ୍ଗେ ବଧି ମିଳିଲେ ସଭାତଳେ ଯାଇ,
ହେ ବୁଧଜନ !

ତାହାଙ୍କୁ କଂସ ଦେଖି ତ୍ରାସେ, ଗମନ କଲା ପ୍ରେତବାସେ,
ଚିନ୍ତାମଣି ଚରଣ କର ସଦା ସ୍ମରଣ ନ ହୋଇ ବନ୍ଧ ମୋହପାଶେ,
ହେ ବୁଧଜନ ! ୨୧



## ଅଷ୍ଟମ ଛାନ୍ଦ

ରାଗ—କୌଶିକ *

## ବିରହ ଦଶା

ଦେଖିଲା ଦୂତିକା ପ୍ରବେଶି ରାଧିକା-ଶୟନ ମନ୍ଦିର ମଧ୍ୟରେ,
ସ୍ୟାମ ଚନ୍ଦ୍ରରେ ଶ୍ୟାମ ସମୋହିନୀ ଲୋଟଇ ପୁଷ୍ପଶୟନରେ,
ତରୁ ଶାଖାରୁ, ନିପତିତା ଯଥା ବ୍ରତତୀ,
ହେଲା ଛନଛନ ଚିତ୍ତରେ ଚିନ୍ତାଇ ଘନଶ୍ୟାମ ଘନପୀରତି । ୧
ବସୁଧାଲିଙ୍ଗନେ କନକାଭିକାନ୍ତ ହୋଇଛୁ ଧୂଳିଧୂସରିତ,
ପଡ଼ି ଅସମ୍ଭାଳେ ଲୋଟେ ତଳେ ଗୃହୁ ଚିକୁରପାଶ ବିଗଳିତ,
କିବା ମର୍କତ-ରାଶି ଲୋଟଇ ଧରଣୀରେ,
କିଅବା ଶୈବାଳ ଶତଦଳ ସହ ଭାସଇ ସରସୀ ପାଣିରେ । ୨
ଶ୍ଳଥବନ୍ଧ ପୀନ କବରୀରୁ ଫୁଲ-ରାଶିପଡ଼ିଛୁ ତଳେ ଖସି,
ଅଧରଧର ଅର ପ୍ରହାରେ ଉଦ୍ଗାର ଦଏ କ ରାହୁ ସୁଧାରାଶି,
ବନା ଅଦରେ, ବହୁଛୁ ଅଙ୍ଗରେ ବସନ,
କରେ ବିସର୍ଜନ ନଳିନନୟନ ଅଞ୍ଜନବଦନ ଘନଘନ । ୩
ପୋଛୁହୋଇ ଲାଗିଅଛୁ ଏଣେତେଣେ ସୈମନ୍ତ * କପାଳେ କପୋଳେ
ବାଳଭାନୁ ଅବା ଖଣ୍ଡ ଖଣ୍ଡ ହୋଇ ପଡ଼ି ରହିଛୁ ଶଶୀକୋଳେ,
ଅତି ମଡ଼ନେ, ମୁଖର କିଙ୍କିଣୀହାରଟି,
ଧୀରେ ମନାକୁଳେ ପଡ଼ିଅଛୁ ତଳେ ଦେହହରଣ କ୍ଷୀଣକଟୀ । ୪

---

* ରସକଲ୍ଲୋଳ "କହୁଁ ମନ ଦେଇ ଶ୍ରଦ୍ଧାବନ୍ତ ହୋଇ" ସ୍ୱରେ । * ସିନ୍ଦୂର

କଣ୍ଠ ଛୁଞ୍ଚି ତଳେ ପଡ଼ନ୍ତୁ ବହ୍ନି ଉଜ୍ଜ୍ୱଳ ମୋତିଫଳହାର,
ତାରକାର ତତି ଯେସନେ ହସନ୍ତ ବଭୂଷିତ କର ଅମ୍ବର,
ସ୍ୱେଦ-ଉଦ୍ଗମ, ବଳେକ୍ଷତ ହେମଗାତ୍ରରେ,
ହିମବିନ୍ଦୁଚୟ ସଞ୍ଚୟ ପ୍ରକାର କନକ-ଲତିକା-ପତ୍ରରେ । ୫

ମଳୟଜ-ପତ୍ର-ଲେଖା ଉରଜରୁ ଭୂମିରେ ଲଗେ ବନ୍ଧ ଝାଳ,
ମହାର ଚନ୍ଦନ-ମଣ୍ଡନ ସାଧନ କରେ କି ବିରହଅନଳ,
ନାହିଁ ତାମ୍ବୂଳ-ରାଗ ସୁପୁଷ୍ପ ବମ୍ବାଧରେ ।
ଧଜ୍ୱଳ ବନ୍ଧୁମନୋରମକାନ୍ତି କିଣି ଅଧର ଶୋଭା କରେ । ୬

କ୍ଷଣକ୍ଷଣ କର ଲକ୍ଷଣ ମୁଦ୍ରିତ ପୁଣପୁଣ ତାହା ଫେଡ଼ଇ,
ପିକଭାଷୀ ଭାଷେ, 'ହା ବନ୍ଧୁ' 'ହା ବନ୍ଧୁ' କରପଦ୍ମ ହଲେ ତାଡ଼ଇ,
କ୍ଷଣେ ମଉନେ, ବହୁ ଦୀର୍ଘଶ୍ୱାସ ଛାଡ଼ଇ,
କ୍ଷଣେ ଉଠି ବସି ଗୃହ ଚଉକଡ଼ ପୁଣି ଧରଣୀରେ ପଡ଼ଇ । ୭

କେତେବେଳେ ନୀଳଚେଳ ଅଞ୍ଚଳକୁ ଅଣି ରଖେ ବକ୍ଷଦେଶରେ
କେତେବେଳେ ଶ୍ୟାମ କମନୀୟରୂପ ଧ୍ୟାନରେ ଦେଖଇ ପାଶରେ ।
ମୋଦ-କୌମୁଦୀ, ସେକାଳେ ତାଳେ ମୃଗାକ୍ଷୀ,
ମୃଦୁବାହୁ ପ୍ରସାରେ ଭୁଜ-ମୃଣାଳକୁ ଅଲିଙ୍ଗନେ ହୋଇ ଲାଳସୀ । ୮

ଦୂତୀ ଶ୍ରୀମତୀର ଏ ଦଶା ନିରେଖି ମଳିନ ସମବେଦନାରେ,
କହିଲା କୋମଳେ, "କାହିଁ ପଡ଼ି ତଳେ ବହୁକ୍ଷ କୁନ୍ଦରଦନା ରେ !
ନିଦ୍ରା ନ ହୁଏ, ଦୁଗ୍ଧଫେନନିଭ-ଶୟନେ,
କନକ-ଶିରୀଷଦେହା କି ପରଶ ନ ହୁଏ ଦେହେ ଭୂଷଣେ । ୯

ଗୃହଦେନେ ଫେରି ଅସିବେ ମୁରାରି ମଧୁପୁରୀରୁ ଯାହା ଦେଖି,
ଚାଲେ କରି କଣ୍ଠ ବ୍ରଜଧାମ-ନାଥ ମୁରଲୀ ଫୁଙ୍କିଲରେ ସୁମୁଖି !
ତପୋତ୍ତି ବରହେ, ସୁନାଦେହ ଚୂନା ନ କର,
ନେହଧଣି ! ହେବେ କଷ୍ଟୀ ତୋ ଏ ଦଶା ଦେଖିଛି ମୁରଲୀଅଧର । ୧୦

ନ ଥିଲେ ନୀରଦ-କେଶି ଗୋ ! ବିଚ୍ଛେଦ    ପ୍ରୀତି ନ ହୁଅନ୍ତା ମଧୁର,
ଅମାନିଶା ବିନା    ଏତେ ସମାଦର    ନ ହୁଅନ୍ତା ପୂର୍ଣ୍ଣିବିଧୁର,
ହୁଏ ତାପିତ,    ତପନତାପେ ଯେଉଁ ଜନ,
ସେ ଜାଣଇ ସିନା  କେମନ୍ତ ମଧୁର  ଅଟେ ଶୀତଳଜଳପାନ ।” ୧୧

ଦୂତୀ ବାଣୀ ଶୁଣି    କୁମୁଦନନ୍ଦିନୀ    ଗୁହିଁ ଛଳଛଳ ନୟନେ,
କୁଣ୍ଠିତ ବୀଣା  ବାଜେଣି ପରାୟେ  କହିଲୁ ଗଦ୍‌ଗଦ ବଚନେ,
“ବନ୍ଧୁ ଅସିବେ,    ଏ କଥା ନ ଆସେ ମନକୁ,
ରସିକା ଚତୁରୀ  ବ୍ରଜପୁରନାରୀ  ଛାଡ଼ିବେ କି ପ୍ରାଣଧନକୁ ।” ୧୨

“ନ କର ଭାବନା  କରକ-ରଦନା”  କହିଲା ପୁଣି ହସି ଦୂତୀ,
“ତୋର ପୋଷାପକ୍ଷୀ  ନ ହେବ ତୋହର  ଏଥିରେ କରୁଛୁ ତୁ ଭୀତ,
କଣ୍ଠ ଦବସ,    ଗଡ଼ିଲଣି ଶ୍ୟାମବନ୍ଧୁର,
ମଧୁପୁର ଯାଇ  ଅଣିବ ଭୁଲାଇ  ଇଷିତେ ତୋର ପୋଷାକୀର । ୧୩

ମିଳନର ସୁଖ    ଦେବେ ପଦ୍ମମୁଖି    ଆସି ଅଚିରେ ମଧୁପୁରୁଁ,
ଅଶନ ବସନ    ଭୂଷଣରେ ସ୍ନେହ    କପାଁ ନ କରୁଛୁ ରମ୍ଭୋରୁ,
ତେଜ ଧରଣୀ,    ଉଠ ଯିବା ବନେ ସତ୍ୱର,
ମୋହିବାକୁ ବ୍ରଜମୋହନ ମନକୁ    ମଣ୍ଡିବା ନିକୁଞ୍ଜକୁଟୀର ।” ୧୪

ଆଶ୍ୱାସବଚନ    ଦୂତୀର ଶୁଣିଣ    ଉଠିଲା ଗୋପିନୀତିଳକ,
ବଦନ-ସରୋଜ    ଅଳପ ବିକଶିଲା    ଯଥା ପ୍ରାତେ ପଦ୍ମକୋରକ,
ଅସି ଲଳିତା,    ବିମୁକ୍ତ ବେଣୀକି ବାନ୍ଧିଲା,
ଅଙ୍ଗୁ ଧୂଳି ଝାଡ଼ି    କାଞ୍ଚୀହାର ଗୋଟି    କୃଶକଟୀରେ ପିନ୍ଧାଇଲା । ୧୫

ବିଶାଖା ଚଞ୍ଚଳ    ସୁଶୀତଳ ଜଳଝରିକା ରଖିଲା ଅଗରେ,
ଚିବରେଖା ଧୋଇ  ଦେଇ ରାଧା ମୁଖ  ବାସେ ପୋଛୁ ଅନୁରାଗରେ,
ବସି ଗୁନ୍ଥିଲ,    ଛୁଞ୍ଚି    ମୁକ୍ତାହାର ଯତନେ,
ଦୂତୀ ଢାଙ୍କିଦେଲା  ବରାଙ୍ଗୀ ଚରମ  କେକୀକଣ୍ଠ ନୀଳବସନେ । ୧୬

ଲଳିତା ବିଶାଖା   ବେନି ସଖୀସ୍କନ୍ଧେ   ବେନି ଭୁଜବଲ୍ଲୀ ନିବେଶି,
ଅଧୀର ଅଧୀର   ଦୁର୍ବଳ ପଦ୍ମର   ସଞ୍ଚାରି ଗମିଲା ସୁକେଶୀ,
ଯାଇ ବସିଲା,   ଦ୍ୱିରଦରଦ ପୀଠାସନେ,
ସୌରକରରେଖା ଅଭିଖ୍ୟାର § ଦେଖା ଯେହ୍ନେ ଘନେ ସାନ୍ଧ୍ୟଗଗନେ ।

ସୁବାସିତ ସ୍ନେହେ ଚରବର୍ଣ୍ଣ ଗୋଳି ବୋଳିଲେ ବରବର୍ଣ୍ଣୀ ଅଙ୍ଗେ,
ସ୍ନାନ ସମାପନ   କରିଲେ ତପନତନୟା-ନୀରେ ନାନାରଙ୍ଗେ,
ହେମପିତୁଳା,   ସୁବର୍ଣ୍ଣକାର ଯେହ୍ନେ ଝାଳେ,
ସ୍ନାନାନ୍ତେ ଭୋଜନ କରାଇ ରାଧାକୁ ଘେନି ମିଳିଲେ ଚନ୍ଦ୍ରଶାଳେ । ୧୮

ବେଶବିନ୍ୟାସରେ   ମତ୍ତିଲେ ସଖୀଏ   ଗୁମ୍ଫୁ ବଚନମାନ କହୁ,
ବିରଚି ସୀମନ୍ତ   ନିର୍ମିଣିଲେ ବେଣୀ   ବସାଇ ମୁକ୍ତାଫଳ ତହିଁ,
ମୋଡ଼ି ବେଣୀକି,   ବାନ୍ଧିଲେ ପୀବର କବରୀ,
କାମ-କଳାପୀ ବା   ଟେକିଲା କଳାପ   ଶ୍ୟାମମୋହନ-ଘନ ସ୍ୱର । ୧୯

ମନୋରମ ନାନା   ସୁକୁସୁମଦାମ ଆଣି   ଖଞ୍ଜି ଦେଲେ ବେଣୀରେ,
କୁସୁମଶାୟକ   କୁସୁମ-ଶାୟକ   ଆଣି ରଖିଲା କି ତୂଣୀରେ,
କାମ-କୋଦଣ୍ଡ,   ସୁଠାମ ଭ୍ରୂଲତା ବେନି,
ଖଞ୍ଜନଗଞ୍ଜନ   ନୟନେ ଅଞ୍ଜନ   ରଞ୍ଜନ କି ଅବା ଶିଞ୍ଜିନୀ । ୨୦

ସୁନୀଳ କୁଟିଳ   କୁନ୍ତଳରେ ଦେଲେ   ମଣିମୟ ମଥାମଣିକି,
ନୀଳ-ଜଳଦଳ ¶ ଚଳୋର୍ମିମାଳାରେ   ରାଜେ ନାଗମଣି ଫଣି କି,
ଗୁନ୍ଥୁ ସୀମନ୍ତେ,   ମଣ୍ଡିଲେ ସଇମନ୍ତରାଗ *
ଚକ୍ରାଘାତେ ଅବା   ରୁଧିର ବହୁଛି   ହୋଇଛି ରାହୁ ବେନିଭାଗ । ୨୧

ରସିକା ନାହିକା   ଉପରେ ଚନ୍ଦନଶତା ଭଲ୍ଲପତ୍ର ଆକାର,
ତାର ଊର୍ଦ୍ଧ୍ୱେ ବେନି   ଭ୍ରୂଲତା ମଧ୍ୟରେ   କସ୍ତୁରୀବିନ୍ଦୁ ଶୋଭାଧାର,
ସଖୀ ଲେଖିଲେ,   ଜିଣିବାକୁ ମହୀ ମଦନ,
ଜନକ ରଥରେ ରଖିଲେ କି କାମ-ଭଲ୍ଲ-ଚକ୍ର କରି ଯତନ । ୨୨

§ ଶୋଭାର ।   ¶ ସମୁଦ୍ର   * ସିନ୍ଦୂର ରଙ୍ଗ

ଇନ୍ଦୁରେଖା ନେଇ    ଦେଖାଇଲା ଅଗେ    ସଖୀଗେ ଅଦରଣବର,
କହିଲା, "ଦେଖ ଗୋ    ମଦନ-ଛାନ୍ଦିକା    ଶ୍ୟାମବଶକରପତ୍ରର,
ଲେଖା ହୋଇଛି,    ବିଶୁଦ୍ଧ ହାଟକପତ୍ରରେ,
ହସିଲା ଶ୍ରୀମତୀ    ଶୋଭିଲା କି ମୋତିପଙ୍କତି ପ୍ରବାଳପାତ୍ରରେ । ୨୩

ନାସା ଶ୍ରୁତି ଶିର    କଣ୍ଠ ବାହୁ ଉର    ହସ୍ତ ପାଦ କଟୀ ଅଙ୍ଗୁଳି,
ବିବିଧ ଭୂଷଣେ    ହେଲେ ଅତି ଶୋଭା    କଟି ରସନାବଳି ବଳି,
ମଣି ନିର୍ମିତ,    ଚନ୍ଦ୍ରହାର ଅତି ସୁନ୍ଦର,
ଗୁରୁନିତମ୍ବିନୀ    ନିତମ୍ବ ବିମ୍ବରେ    ଶୋଭେ କିବା ନଗେ ନିର୍ଝର । ୨୪

ବେଶ ସାରି ସଙ୍ଗ    ହେଲେ ସଖୀ କୁଞ୍ଜବନ ଗମନ ପାଇଁ ମନେ,
ଗୋପିନୀତିଳକେ    ଘେନି କଉତୁକେ    ଗମିଲେ ସଧୀରଗମନେ,
ଦେଖି ବରଠା,    ନିଜକୁ ଚଞ୍ଚଳା ଭାଳିଲା,
କନକନୂପୁର    ମଧୁରନିକ୍ୱଣ    କାଞ୍ଚି ରଣିରଣେ ମିଳିଲା । ୨୫

ସଙ୍ଗ ସହଚରୀ    ଶୋଭିଲା ସୁନ୍ଦରୀ    ବୃନ୍ଦାବନେଶ୍ୱରୀ ମୋହିନୀ,
ଲାବଣ୍ୟ-ସରସୀ    ଲହରୀରେ ଭାସି    ଚଳେ କି ନବୀନା ନଳିନୀ,
ପାଦ ସଞ୍ଚାର,    ମନ୍ଥିଲା ମରାଳୀ ଗରବେ,
କରିଲେ ମଧୁର    ଝଙ୍କାର ଅଧୀର    ମଞ୍ଜୀର-ମଧୁବ୍ରାତ-ରାବେ । ୨୬

ଲୀଳାଗତି କରି    ଦ୍ୱିର କରିଗତି    ମିଳିଲେ ଯାଇ କୁଞ୍ଜବନେ,
କଲେ ବିଚରଣ    ନବୀନପଲ୍ଲବ    ନବୀନକୁସୁମ ଚୟନେ,
ମନ ଉଲ୍ଲାସେ,    ମଣ୍ଡିବାକୁ କୁଞ୍ଜକୁଟୀର,
ହେଲେ ଉଭା ନୀପମୂଳେ ବ୍ରଜଶୋଭା    କୂଳେ ଯମୁନା ତଟିନୀର । ୨୭

କେ ସଖୀ ଅଣିଲା    ରାଧାପାଶେ ତୋଳି    ନବବିକଶିତ ଚମ୍ପକ,
କହିଲା ଅପର    ସଖୀ, "ଚମ୍ପା ପରି    ନୁହେ କଳାଭୃଙ୍ଗବଶକ"
ହସି କୌତୁକେ,    ପ୍ରଥମା କହିଲା ଉତ୍ତରେ,
"ଏ ଚିହ୍ନାନ୍ତ ଭ୍ରାନ୍ତ ହୋଇଛି ରେ ସହି ଚମ୍ପାବରଣୀ ରାଈଠାରେ" । ୨୮

କେହୁ ସହଚରୀ   ଗୃହାଙ୍ଗଣକୁ ତହୁଁ   ଆଣିଲା ତୋଳି ସୂର୍ଯ୍ୟମୁଖୀ,
କହିଲା ରାଈକି,   "ଦେଖ ସୂର୍ଯ୍ୟମୁଖୀ   ଅଟେ ତୋ ମିତଣୀ ସୁମୁଖି !
ବନ୍ଧୁ ପାଶରୁ,   ନ କରେ ଆନନ ଅନ୍ତର ।"
ତା ଶୁଣି ଅପରା   କହିଲା, "ନ ଜାଣେ   ସୂର୍ଯ୍ୟମୁଖୀ କାମମନ୍ତ୍ର ।" ୨୯

କେ ସଖୀ ଆଣିଲା   କାଳିନ୍ଦୀହ୍ରଦରୁ   ନୟନ କରଣ ନଳିନୀ,
କହିଲା, "ରାଧିକେ !   ତୋ ସମ ନଳିନୀ   ଅଟଇ ବନ୍ଧୁସୁହାଗିନୀ,
ତଳେ ବନ୍ଧୁକୁ,   ନ ଦେଖି ହୁଅଇ ମଳିନୀ,"
ଅପରା ସଖୀଏ ଭାଷିଲା, "କିନ୍ତୁ ଏ ନୁହେ ବନ୍ଧୁଠାରେ ମାନିନୀ ।" ୩୦

ହାସ୍ୟ କଉତୁକେ   ନବକିଶଳୟ   ସୁମନସରାଶି ଆହରି,
କୁଞ୍ଜକୁଟୀରରେ   ମେଳିଲେ ସଖୀଏ   ସଙ୍ଗେ ଶ୍ରୀମତୀ ଘେନି କରି,
କଲେ ପ୍ରକାଶ,   ଯେ ଯାହା ଶିଳପଚାତୁରୀ,
ରଚିଲେ କୁସୁମେ   ବିବିଧ ପଦାର୍ଥ   ପରକାଶି ଶୋଭା ମାଧୁରୀ । ୩୧

ରଚେ ରମ୍ୟଦାମ   ବାମନେତ୍ରୀ ଶ୍ୟାମ   ବକ୍ଷ କଣ୍ଠ ଚୂଡ଼ା ମଣ୍ଡନେ,
କେହୁ ସହଚରୀ   ଦେଖି ହାସ୍ୟ କରି   କହେ ପରିହାସ ବଚନେ,
"ତାଳେ ଗରଳ,   କାଳିଆ ନାଗର ଦଂଶନ,
ତେବେ ତା ଦଂଶନ ଲୋଭେ କିପାଁ ଜନ କରନ୍ତି ବିବିଧ ଯତନ ।" ୩୨

ସଖୀଏ କହିଲା, "ଚାଲ ଶ୍ୟାମ ସଙ୍ଗେ   କୌତୁକ ଆଜ ଗୋ କରିବା,
କୁସୁମରେ ଗଢ଼ି   ପିତୁଳା ଗୋଟିଏ   କୁସୁମଶେଯେ ଶୁଆଇବା,
ରାଧା ଆକାରେ,   କରିବା ତାହାର ଆକାର,
ଚମ୍ପକେ ରଚିବା ତାର ଅଙ୍ଗଯଷ୍ଟି ନୀଳୋତ୍ପଳେ ଭୂରୁ ଚିକୁର । ୩୩

ଶତଦଳଦଳେ   ରଚିବା ନୟନ   ରକ୍ତକୁମୁଦରେ ଅଧର
ଦେବା ନେଇ ପାଦ   କରପଦତଳେ   ସକଇନ୍ଦବର ପତର,
ଚମ୍ପାକଳିରେ,   ନିର୍ମିଣିବା ତାର ଅଙ୍ଗୁଳି,
ମନ୍ଦହାସ ଛଟାଶୋଭିତ ଅଧର   ମଧ୍ୟରେ ଦେବା କୁନ୍ଦକଳି । ୩୪

ଶ୍ୟାମଙ୍କ ଆସିବା ବେଳ ଜାଣି ଆମ୍ଭେ ସକଳେ ଯିବା ଅପସରି,
ମାତ୍ର ଥିବ ରାଈ ବ୍ୟଜନକୁ ନେଇ ଶୟନ ପାଶେ ସଖୀ ପରି,
ଟାରେ ନିଷେଧି, ପଲଙ୍କ ନିକଟ ଗମନ,
ହେବ ଦୂରେ ଛୁଡ଼ା ମୁଖ ଚାହିଁ ବାଟେ ହସ୍ତରୁ ପକାଇ ବ୍ୟଜନ ।୩୫

ଏହିରୂପେ ନାନା ହାସ୍ୟ ରଙ୍ଗ ଗଳ୍ପେ କାଟିଲେ ସଖୀଏ ସମୟ,
କ୍ରମେ କ୍ରମେ ସନ୍ଧ୍ୟା ହୋଇଲା ପ୍ରବେଶ ଭାନୁ ଅସ୍ତ ଚନ୍ଦ୍ର ଉଦୟ,
ବନେ ପୂରିଲା, ବିହଙ୍ଗ କୁଳ-କୋଳାହଳ,
ହୋଇଲା ବରୁଣଦିଗ ସିନ୍ଦୂରିତ ବଳାରାତଦିଗ ସୁନୀଳ । ୩୬

ବୃନ୍ଦାସନେ ବସି ମନ୍ଦମନ୍ଦ ହସି ମନ୍ଦସମୀରେ ଫୁଲକୁଳ,
ନାଚିଲେ ହରଷେ ଦାନି ଦଶଦିଶେ ନାନାସୁଖଦ ପରିମଳ,
ନନ୍ଦ-କାନନେ, କ୍ରମେ ଫୁଟିଲେ ତାରାତତି,
ରକ୍ତିମବଦନା ଯମୁନା ହସିଲା ଲହରୀ ଛଳେ ପ୍ରେମେ ମାତି । ୩୭

ଆସିଲା ତମିସ୍ରା ଗ୍ରାସ କରି କରି ହାସମୟ ଦିଗନ୍ତଚୟ,
ବିଚ୍ଛେଦ-ଅନଳ ଜଳିଲା ପ୍ରବଳ ଦହି ବିରହୀର ହୃଦୟ,
ପିନ୍ଧି ଧବଳ, ଦୁକୂଳ ଯୁଗଳ ତଡ଼ିତ,
ଅସି ଦ୍ୱିଜରାଜ ବିରହ ହୁତାଶେ ଜାଳିଲା ମନୋଜ ଅଦ୍ଭୁତ । ୩୮

ଶ୍ୟାମ ପ୍ରତ୍ୟାଗମ ବାରତା ପଥକୁ ଚାହିଁ ବସିଥିଲା ଯଶୋଦା,
ନ ପାଇ ବାରତା ହେଲା ଉତ୍କଣ୍ଠିତା ବହିଲା ନେତ୍ରୁଁ ଅଶ୍ରୁଧାର,
କାନ୍ଦି କହିଲା, "ସଖି ! ସବୁ ଆଶା ବିଫଳ,
ରହି ମଧୁପୁରୀ ମୋ କଥା ପାସୋରି ଗଲେଣି ଯଶୋଦାଦୁଲାଳ । ୩୯

ରଖି ମୋ ବଚନ ସଜନି ! ବହନ ଗମନ କର ନନ୍ଦପୁର,
ଆଣ ଗୋ ଉଦନ୍ତ ବ୍ରଜେ ଉପନୀତ ହେଲେଣି କି ବ୍ରଜସୁନ୍ଦର,
କଷ୍ଟ ଦିବସ, ହେଲା ତ ଆଜ ଅବସାନ
କୁଞ୍ଜବିହାରୀଙ୍କ ଆସିବେ କୁଞ୍ଜକୁ ନ କର ନନ୍ଦଙ୍କୁ ବନ୍ଧନ ।" ୪୦

ଛାଡ଼ିଲା ଗମନ ଦୂତିକା ବଚନ କର୍ଣ୍ଣରେ ଚରଣେ ଛୁଟିଲା,
ହେଲା ଅନମ୍ବର ମସ୍ତକେ ଅମ୍ବର ଖସିଲା ସ୍କନ୍ଧରୁ ଅଞ୍ଚଳ,
କୁଞ୍ଜକୁଟୀରେ, ବସିଲା ରାଧିକା ମଜ୍ଜନେ
କେବଳ କେଶବ ଭାବମାନ ଧ୍ୟାନ କଲା ସେ ବିଷଣ୍ଣବଦନେ । ୪୧

ବାଳା ଏଣୀନେତ୍ରୀ ରୁନ୍ଧିଲା ଯେଣିକି ଦେଖିଲା ନବଘନରୂପ,
ମନେ ବେଳୁଁ ବେଳ ବିରହ-ଅନଳ ଜଳିଲା ଖରେ ଦପଦପ,
ଶୁଣେ ନାଗର, ମଞ୍ଜୀରରବ ତେଜି ଗୃହ,
ଦୁଏ ଉଲ୍ଲସିତା ଗୃହେଁ ଥୈକି ମଥା ଗମେ ଦ୍ୱାରପାଶେ ଝଟିତ । ୪୨

ପିକବାଣୀ ଶୁଣି ଅପି ବସେ ପୁଣି କହେ, "ଶୁଣ ଶୁଣ ସଜନୀ !
ନିକୁଞ୍ଜବିହାରୀ ଡହୁ ଡହୁ କରି ବନେ କରନ୍ତି ବେଣୁଧ୍ୱନି,
ଅତି କୁଟିଳ, ଅଟେ ଗୋ ବୃନ୍ଦାବନ ପଥ,
ଯାଇ ତାଙ୍କୁ ଅଳି ଅଣ ଗୋ ସଙ୍କୁଳି ହେଲେଣି ସେ ବା ପଥଭ୍ରାନ୍ତ ।

ଦେଖି ନଳିନୀକି ମଳିନବଦନୀ ନଳିନବଦନୀ କହଇ,
"ଅହା ବନ୍ଧୁ ବିନା କି ଘୋରଯାତନା ମୋ ପ୍ରାୟେ ସହୁ ପ୍ରାଣସହି !
କିନ୍ତୁ ପ୍ରଭାତେ, ହେବୁ ସୁଖୀ ପୁଣି ମିଳନେ,
ନାହିଁ ଅଶା ମମ, ନଳିନୀ ! ମୋ ସମ କିଏ ଅଭାଗୀ ତ୍ରିଭୁବନେ ?"୪୪

ଶରଦିନ୍ଦୁମୁଖୀ ଦେଖି ଚକ୍ରବାକୀ ବିରହାତୁରା ନଦୀକୂଳେ,
କହେ, "ଦେଖ ସିନା ବନ୍ଧୁ ବିନା ଦୀନା ହୋଇ ଏ ବସିଛୁ ଅକୂଳେ,
ଅହା କି ଦୋଷ, ଦେଖି କରି ବୋଲ ସଜନୀ !
ରଥାଙ୍ଗ ମିଥୁନେ ବିରହ-ଦହନେ ଜାଳନ୍ତି କଠିନା ଯାମିନୀ । ୪୫

ଅସିଲେ ପ୍ରଭାତ ପୁଣି ପ୍ରାଣନାଥ ସାକ୍ଷାତ ପାଇ ଚକ୍ରବାକୀ,
ଟଳିବ ହରଷେ ରହୁ ବନ୍ଧୁ ପାଶେ ଉଛୁଳେ ସେ ପ୍ରେମଜାକି ଡାକି,
ଏ ତ ନୁହଇ, ମୋ ପରିପ୍ରାୟେ ହତଭାଗିନୀ,
ନାହିଁ ମୋର ଅଶା ପ୍ରେମସିନ୍ଧୁ-ଇନ୍ଦୁ ବାମରେ ହେବ ପ୍ରମୋଦିନୀ ।୪୬

କେତେ ସୁଭଗିନୀ ଅଛେ କୁମୁଦିନୀ ହେଉଛୁ ପ୍ରେମେ ଢଳଢଳ
ସୁଧାକର ସୁଧା କର ପରଶରେ ହେଉଛନ୍ତି ଆନନ୍ଦେ ଚଞ୍ଚଳ,
ଦେଖି ବନ୍ଧୁଙ୍କୁ, ହେଉଛୁ ପ୍ରେମେ ହସ ହସ ,
ମୁଁ ହତଭଗିନୀ ହୋଇବ କି ପୁଣି ସୁଖିନୀ କୁମୁଦ ସଦୃଶ ।" ୪୭
ଆକାଶରେ ରାଈ ନୟନ ପକାଇ ଦେଖାଇ କହଇ , "ସଜନି !
ଦେଖ ଭାଗ୍ୟବତୀ ରୋହିଣୀ ପ୍ରମତ୍ତ ତାରକାପତି ସଙ୍ଗେ ଘେନି,
ପ୍ରେମେ ମାତିଣ ତୋଷଇ ତାରକାନିକରେ
ତାରକେଶ ଲୀଳା ସତେ ନନ୍ଦବାଳା ପ୍ରକାଶିବେ ପୁଣି ବ୍ରଜରେ ।" ୪୮
ପୁଣି ଚନ୍ଦ୍ରାନନୀ କସ ମନେ ଗୁଣି ପାଣିପାଦ ରଖି ବଦନେ,
ବସି ଧରାସନେ ସଜଳନୟନେ ରହିଲ ମୁହୂର୍ତ୍ତ ମଉନେ,
କୁଞ୍ଜପଥକୁ ପୁଣି ଗୃହି ଏକନୟନେ,
ସଜସମ୍ବେକାଙ୍କ୍ଷା ଅଧୀରେ ଅପେକ୍ଷା କଲ ଦୂତୀ ପ୍ରତ୍ୟାଗମନେ । ୪୯
କ୍ଷଣେ ବସେ କ୍ଷଣେ ଉଠେ କ୍ଷଣେ କରେ ଫୁଲଶଯ୍ୟାପାଶେ ଗମନ,
କ୍ଷଣେ ଶୟନକୁ ବିଶେଷେ ସଜାଡ଼େ କ୍ଷଣେ ବିଞ୍ଚିହୁଏ ବ୍ୟଜନ,
କ୍ଷଣେ ମଶାର ଉଠାଇ ପୁଣି ତା ଖସାଏ,
ବୁଧେ ଚନ୍ଦ୍ରାମଣିଚରଣ ସୁମର ନିତାପ ନ ଥିବ ମଶାଏ । ୫୦



## ନବମ ଛାନ୍ଦ

ରାଗ—କଲ୍ୟାଣଅହାରୀ *

### ଯଶୋଦାଙ୍କର ବିଳାପ

ରାଧା ସହଚରୀ କୁଞ୍ଜରୁ ବାହାରି ପ୍ରବେଶି ନନ୍ଦର ସଦନେ,
ଆନନ୍ଦମୁଖର ନନ୍ଦରାଜାପୁର ଦେଖିଲି ରହିଛୁ ମଉନେ,
କେବଳ, ପ୍ରବଳ ହାହାକାର ରବ,
କୃପଣ ଧନେଶ ବ୍ୟାକୁଳ ଯାଦୃଶ ହରାଇ ବିପୁଳ ବିଭବ । ୧

* ରସକଲ୍ଲୋଳ "କୁସୁମ ସମ୍ପୂ ହୋଇଲା ହୃଦୟ" ବୃତ୍ତେ

ନ କର ଚର୍ବଣ ତୃଣ ଗାଭୀଗଣ ନୁଆଁଇଁ ଶ୍ରବଣ ମସ୍ତକ,
ହୋଇଛନ୍ତି ଠିଆ ଧୀରେ ନେଇ ମୃଦ ଅପାଙ୍ଗରୁ ବହେ ଲୋତକ,
ଦୋହନ, କାଳ ହେବାରୁ ଅବସାନ,
ହମ୍ବାରବ କରି କ୍ଷୁଧିତ ବାଛୁରି ଆକୁଳେ କରନ୍ତି ରୋଦନ । ୨

ପରସ୍ପରଙ୍କାଳି ଯେସନେ ପୁତ୍ତଳି ଅଛନ୍ତି ବସି ସ୍ଥାନେ ସ୍ଥାନେ,
ନାହିଁ କଥା ମୁଖେ ମନ ପୂର୍ଣ୍ଣ ଦୁଃଖେ ବିଷାଦ ପୂରିଛି ବଦନେ,
ମନରୁ, ପାସୋରି ଯାଇଛି ସକଳ,
'ହା ଶ୍ୟାମ''ହା ରାମ''ହା ନନ୍ଦ ଯଶୋଦା' ଘୋଷି ହେଉଛନ୍ତି କେବଳ ।୩

ଯେହ୍ନେ କୌମୁଦିନୀ ଶାରଦରଜନୀ କାଦମ୍ବିନୀଜାଳେ ଅଚ୍ଛିନ୍ନା,
ନନ୍ଦନ ବିରହେ ନନ୍ଦରାଜା ଗୃହେ ନନ୍ଦରାଣୀ ତେହ୍ନେ ମଳିନା,
ସତତ, ଢାଳେ ଅଶ୍ରୁ ଧାର ନୟନ,
ସୁତଙ୍କର ଗୁଣ ଗୁଣି ପୁଣି ପୁଣି କାତରେ କରଇ ରୋଦନ । ୪

"ରେ କ୍ରୁର ଅକ୍ରୁର ଘେନି ଗଲୁ ମୋର ବେନି ନେତ୍ରୁଁ ବେନି ପୁତ୍ତଳୀ,
କରଣ କପଟ କହି ଗଲୁ ଶଠ ! ଆସିବେ ରାମ ବନମାଳୀ,
ବାହୁଡ଼ି, କଂସ ନଗରୁ ଯାତ୍ରା ଦେଖି,
ମାସ ଗୁରି ଦିନ ଥୟ କରି ମନ ରହିଥାଅ ପଥ ନିରେଖି । ୫

କଂସ ଗଲା ନାଶ ରାମ ପୀତବାସ ! କିପାଇଁ ନ ଆସ ବାହୁଡ଼ି,
ଛେନା ଦୁଗ୍ଧ ଦଧି ନବଣୀ ସରଦି ହେଉଛି ବାସି ଭାଣ୍ଡେ ପଡ଼ି,
ବହନ, ଆସ ଭୁଞ୍ଜାଇବି ନବଣୀ,
ନ ହୋଇବି ରାଗି ନ ଦେବଇଁ ଗାଳି ଆସ ମୋ ରାମ ବେଣୁପାଣି ! ୬

ବାନ୍ଧିଥିଲି ଦିନେ ଯାମଳ-ଅର୍ଜ୍ଜୁନେ କି ଅବା ସେ କଥା ସୁମରି,
ମନେ ବହି ରୋଷ ଅରେ ପୀତବାସ ! ନ ଆସୁ ତେଣୁ ଏ ନଗରୀ,
ଅଧୀର, ଅତି ହେଲୁ ତେଣୁ ବାନ୍ଧିଲି,
କେବେହେଁ ଜୀବ ଥାଉଁ ନ ବାନ୍ଧିବି ଆଉ ଆସ ରେ ବଜାଇ ମୁରଲୀ । ୭

ଧନେ ପୀତବାସ ! ହୋଇ କ୍ରୀଡ଼ାବଶ କଲ୍ଲ ରେ ମୃତ୍ତିକା ଭକ୍ଷଣ,
କୁବୁଦ୍ଧିରେ ମୁହିଁ ମନେ କୋପ ବହି ବାସେ କଲି ତୋତେ ବନ୍ଧନ,
ପ୍ରହାର, ଘନ୍ଦ୍ରେଭ କଲି ମୁଁ ତୋ ଦେହେ,
ସେହୁ ଅଭିମାନେ କୋପ ବହି ମନେ ମୋତେ ଦହୁଛୁ କି ବରହେ ? ୮

ଦଧି ଦୁଗ୍ଧ ଭାଣ୍ଡ କଲ୍ଲ ଖଣ୍ଡ ଖଣ୍ଡ ଦିନେ ଗମ୍ଭିରୀରେ ପ୍ରବେଶି,
ମୁଁ ଦେଖନ୍ତେ ଯାଇ ଗଲ୍ଲ ରେ ଚଳାଇ ତହୁଁ ମୁଁ ଚଳିହୋଇ ରୋଷି,
ଲଗୁଡ଼, ଧରି ପଛେ ମୁଁ ଗୋଡ଼ାଇଲି,
କଦମ୍ବ ଶିଖରେ ଉଠି ତରତରେ ବସି ବଜାଇଲ୍ଲ ମୁରଲୀ । ୯

କହିଲ୍ଲ ରେ ନାଥ ! "କ୍ଷୁଭିଲି ମୁଁ ଦଧି ହୋଇଣ କ୍ଷୁଧାରେ ଆକୁଳ,
ନ ଯିବ ସମୀପେ ନ ରହିବ ରୋଷେ ଯଦି ମୋତେ ମାରି ଲୋଡ଼ିଲ,"
ସେ ଦୋଷ, ଥିଲ୍ଲ କି କାହ୍ନୁ ରଖି ମନେ,
ହେବାକୁ ଦୁର୍ଦ୍ଦଣ୍ଡ ତୋତେ ସିନା ଦଣ୍ଡ ଦେବାକୁ ଇଚ୍ଛିଲି ସ୍ୱମନେ ।୧୦

ଘୃହେ ବେଣୁପାଣି ! ନ ଭୁଞ୍ଜ ନବଣୀ ଗୋଳିଲେହେଁ ଖଣ୍ଡ ସଙ୍ଗରେ,
ଭ୍ରମି ଗୋପପୁରେ ପଶି ଘରେ ଘରେ ଦଧି ହରୁ ନାନାରଙ୍ଗରେ,
ଭାଣ୍ଡକୁ, ଭାଞ୍ଜୁ ଦଧିକି ଖାଇ ସାରି,
ଗୋପୀମାନେ ଚଳି ଦେଇ ନାନା ଗାଳି ମୋ ଠାରେ କରନ୍ତି ଗୁହାରି ।୧୧

କେହି ଗୋପନାରୀ ଅତି ଚତୁର କରି ତୋ ଦୁଷ୍ଟପଣକୁ ଶ୍ରୀଧର !
ଗୃହେ ଯେତେ ତାର ଥାଏ ଦଧି ସର କ୍ଷୁଦ୍ର କରପନେ ତୋହର,
ଟାଙ୍ଗଇ, ଭାଣ୍ଡ-ରକ୍ଷା ପାଇଁ ମନରେ,
ତେବେହେଁ ତୋହର ନ ଫୁରଇ କର ପଳାଉ ଭାଣ୍ଡ ଘେନି ଭରେ ।୧୨

ଅସହ୍ୟ ଭର୍ତ୍ସନା ଗୋପୀଙ୍କର ସିନା ସହି ନ ପାରି ହୁଏଁ ଚଳି,
କେତେବେଳେ ମାରେଁ କେତେବେଳେ ଧରେଁ କେବେ ବା କୋପେ
ଦିଏଁ ଗାଳି,
ସେ ସବୁ, ରଖିଛୁ କି କାହ୍ନୁ ମନରେ,
ଅଉ ନ ମାରିବି ଅଉ ନ ଧରିବି ପ୍ରାଣ ଥାଉଁ ଅପଘନରେ । ୧୩

ତୋ ବିନା ରେ ଧନ ! ଶ୍ମଶାନ ସମାନ   ଭବନ ହେଲାଣି ମୋହର,
ନ ଦେଖି ତୋହର   ମୁଖ-କଳାକର   ନୟନ ହେଲାଣି ଅନ୍ଧାର;
ଅମଳ,   ନୀଳକମଳ ! ଆସି ଥରେ,
କହୁ 'ମାତ ! ମାତ ! ଦିଅ ନବନୀତ' ବସ ତୁ ମୋହର କୋଳରେ ।୧୪

ତୋର ପିତା ନନ୍ଦ   କାନ୍ଦି କାନ୍ଦି ଅନ୍ଧ ହେଲେଣି ରେ ଅବଳଜଡ଼ !
ନ ଚରନ୍ତି ତୃଣ   ଗାଭୀ ବତ୍ସାଗଣ   କରଣ ସଦା ହମ୍ବାରଡ଼,
ପ୍ରଭାତେ,   ବ୍ରଜବାଳଗଣ ଆସିଣ,
'ଭାଇ ଘନଶ୍ୟାମ'   'ଭାଇ ବଳରାମ'   କହି ଡାକନ୍ତି ପ୍ରତିଦିନ ।୧୫

ନେତ୍ର-ଅଭିରାମ   ଘନଶ୍ୟାମ ରାମ !   ଜୀବ ପରମ ମୋ ଦେହର,
ବେଗ କରି ଆସ   ହସି କୋଳେ ବସ   ଭୁଞ୍ଜାଇ ଦେବି କ୍ଷୀର ସର,
ବହୁତ,   ନବଣୀ ରଖିଛି ଭାଣ୍ଡରେ,
ଖଣ୍ଡରେ ମିଶାଇ ବାଣ୍ଟିଦେବି ମୁହିଁ ଖାଇ ଖାଇ ନାଚ ଦାଣ୍ଡରେ ।"୧୬

ହେଲା ପରବେଶ   ନନ୍ଦରାଣୀ ପାଶ   ସେକାଳେ ଦୂତତା ବହନ,
କହିଲା, "ଯଶୋଦେ ! କିପାଇଁ ବିଷାଦେ ଭୂଶୟନେ କର ରୋଦନ ?
ଆସିବେ,   ଫେରି ବ୍ରଜେ ନବ-ନୀରଦ,
ଧଇର୍ଯ୍ୟକୁ ଧର   ନ ହୁଅ କାତର   ଛାଡ଼ ମନୁଁ ଶୋକ ବିଷାଦ ।" ୧୭

"ଧଇର୍ଯ୍ୟ କେମନ୍ତେ   ଧରିବି ମୁଁ ତାତେ"   କହିଲେ କାନ୍ଦି ନନ୍ଦରାଣୀ,
"ସଦନ ଅନ୍ଧାର   ମନ ଶୂନ୍ୟ ମୋର   ଯିବାରୁ ରାମ ବଂଶୀପାଣି,
ଦୂତ ଗୋ !   ମୋ ଗୃହମଣ୍ଡନ ସେ ବେନି,
ତାହାଙ୍କ ବଦନ   କରି ଦରଶନ   କାଟୁଥିଲି ଦିବା ରଜନୀ ।୧୮

ଭ୍ରମି ନାନାତୀର୍ଥ   କରି ନାନାବ୍ରତ   ସେବି ଶୁଭଦାୟୀ ଭବାନୀ,
କରି କେତେ ମାନସା   ଦେବ ଉପାସନା   କୋଳରେ ଲଭିଲି ସେ ନନ୍ଦନ,
ଦୂତ ଗୋ !   କାହା ପାଇଁ ଥିବ ଜୀବନ,
ବିଧି କଷ୍ଟ କରି   ଦେଇ ନେଲା ହରି   ଅଞ୍ଚଳରୁ ଗଣ୍ଠିରତନ ।୧୯

ନାଥ କର୍ମଫଳେ ମୁଁ ଲଭିଲି କୋଳେ ରାମ ଶ୍ୟାମ ବେନି ଭାଇଙ୍କି,
ତାହାଙ୍କ ଲାଳନେ ତାହାଙ୍କ ପାଳନେ ଜୀବନ ମନ ଦେଲି ଢାଳି,
ଦୂତ ଗୋ ! ଦେଖିଲେ ତାହାଙ୍କ ବଦନ,
ବାସବ ବିଭବ ବଇକୁଣ୍ଠ ଲାଭ ତୁଚ୍ଛ କରେ ସିନା ମୋ ମନ । ୨୦

ପ୍ରାତେ ଗୁଞ୍ଜମାଳ ଆଣି ତାହା ଚୂଳ ବାନ୍ଧିବି କେକୀପୁଚ୍ଛ ଦେଇ,
ପୀତ ବାସ ଆଣି ପିନ୍ଧାଇ କାଛେଣୀ ଖଣ୍ଡେ ନବନୀତ ଭୁଞ୍ଜାଇ,
ଦେଇଣ, ଶିଙ୍ଗା ପାଞ୍ଚଣି ବେଣୁ କରେ.
ବାଛୁରି ଚରଣ କରିବା କାରଣ ତାହାକୁ ପେଷିବି କାନ୍ତାରେ । ୨୧

ସେ ଧରି ଅଞ୍ଚଳ କରିବ ଜଞ୍ଜାଳ, 'କାହିଁ ଦିଅ ସର-ଓଦନ,
ଯେବେ କ୍ଷୁଧା ପୁଣି ଲାଗିବ ଜନନି ! ବନରେ କରିବି ଭୋଜନ,'
ଘେନିଣ, ଗାଭି ବତ୍ସାବୃନ୍ଦ ସଙ୍ଗରେ,
ବଜାଇ ମୁରଲୀ ଡାକି 'କାଳି ଧଳି' ସେ ନାଚିବ ନାନାରଙ୍ଗରେ ।୨୨

ତାହା ଆଗମନ—ପଥ ନିରୀକ୍ଷଣେ କରିଣ ବସିବି ଅଙ୍ଗଣେ,
ଦଧି ଦୁଗ୍ଧ ସର ଛେନା ଖଣ୍ଡ କ୍ଷୀର ତାପାଇଁ ରଖିବି ଯତନେ,
ରଖିବି, ତାହା ମୁଖେ ନେବି ସତତ,
ତାହା ପ୍ରତ୍ୟାଗମ ଦେଖି କ୍ଷିପ୍ର ସମ ହେବି ମୁଁ ଆନନ୍ଦେ ଉନ୍ମତ୍ତ । ୨୩

ତାହା ବନମାଳ ଫେଡ଼ି ରଖି ତଳ ଅଙ୍ଗୁ ଧୂଳି ଝାଡ଼ି ଅଞ୍ଚଳେ,
ତାହାକୁ ଉଲ୍ଲାସେ ଦେଇ କଣ୍ଠଦେଶେ ଚୁମ୍ବ ଦେବି ମୁଖ-କମଳେ,
ତାହାକୁ, ବସାଇ କୋଳରେ ଆଦରେ,
ଭୁଞ୍ଜାଇବି ସର ଛେନା ଦଧି କ୍ଷୀର ମିଶାଇ ଶର୍କରା ସଙ୍ଗରେ । ୨୪

ତାହା ପ୍ରତ୍ୟାଗତ କାଳ ହେଲେ ଗତ ମୋ ଚିତ୍ତ ଚିନ୍ତାରେ ବୁଡ଼ିବ,
କାହ୍ନୁ କାହ୍ନୁ କରି ତାହା ନାମ ଧରି ଗୋପଦାଣ୍ଡେ ଡାକ ପଡ଼ିବ,
ଏ ଘରେ, ସେ ଘରେ ତାହାକୁ ଲୋଡ଼ିବ,
ଢଳା ଢଳାଢଳ-ଲପନ ତାହାର ନ ଦେଖି ଚିନ୍ତାରେ ବୁଡ଼ିବି । ୨୫

କୋଳରେ ବସାଇ ପଞ୍ଝାଇ ପଞ୍ଝାଇ ନାନାସ୍ୱରେ ଗୀତ ମୁଁ ଗାଇ,
ନିଶିରେ ସଧୀରେ କରପଦ ଶିରେ ଗୁଳି କାହା ନିଦ୍ରା ଜନ୍ମାଇ,
କୁସୁମ-କୋମଳ ଶେଯେ ଶୁଆଇବ,
କା ମୁଖେ ଚୁଚୁକେ ନିବେଶି ପୁଲକେ ସଧୀରେ ବ୍ୟଜନେ ଶଞ୍ଚିବ ।୨୬

କିଏ ନନ୍ଦସ୍କନ୍ଧେ ବସିଣ ଅନନ୍ଦେ ଦେଖି ନିଶାଙ୍କର ଗଗନେ,
କହିବ "ଜନକ ! ଏହି କ୍ରୀଡ଼ନକ ମୋର କରେ ଦିଅ ବହନେ,"
ଶୁଣିଲେ, "ଗୃହମାମୁଁ ସେ ତ ତୋହର",
କେ କହିବ,"ମୋର ଗୃହମାଇଁ କାହିଁ କେତେ ମାମୁଁ ମାଇଁ ମୋହର ?"୨୭

କିଏ ବ୍ରଜଦେଶେ ନଟବର ବେଶେ ଭ୍ରମି ଭ୍ରମି ଦଧି ଯାଚିବ,
କେ ଭୁଞ୍ଜିବ ଦଧି ଗୋପୀଙ୍କି ପ୍ରମୋଦି ଶବଧ ଭଙ୍ଗିରେ ନାଚିବ,
କାହାର, ନାଟ ଦେଖି ଗୋପୀନିକର,
ବୋଲି ଥେଇ ଥେଇ କରତାଳି ଦେଇ ହସିବେ ଉଚେ ହରଷର ।୨୮

କାଳିୟକୁ ଦଳି କିଏ ପଦ୍ମ ତୋଳି ଫେରିବ ଗୋପନଗରେ,
କେ ଏଡ଼େ ନିର୍ଭୟ ଦଳିଣ କାଳିୟ ନାଚିବ ତାହାର ଭୋଗରେ,
ବାସବ, ସଙ୍ଗେ କେ ବିବାଦ କରିବ,
ସପ୍ତମ ବରଷେ ଅଳପ ପ୍ରୟାସେ ଗୋବର୍ଦ୍ଧନ ଗିରି ଧରିବ । ୨୯

ବନେ ଦାବାନଳ ଏ ବ୍ରଜମଣ୍ଡଳ ଘୋଟିଲା ଦୂତ କି ନ ଜାଣ,
ସହଜେ ଅନଳ ନିଭାଇ ଚଞ୍ଚଳ କଲା ସେ ଗୋପର ରକ୍ଷଣି,
କେ ଅଉ, ସଙ୍କଟରୁ ଗୋପ ତାରିବ,
ଗୋପର ଅନିଷ୍ଟ ସବୁ କରି ନଷ୍ଟ ଗୋପଙ୍କୁ ନିର୍ଭୟ କରିବ । ୩୦

ଦୂତ ! ଅତି ସେନା ମୁହିଁ ଭାଗ୍ୟହୀନା ବିଧାତା ସଦା ମୋ ବିପକ୍ଷ,
ହୋଇଣ ପ୍ରସନ୍ନ ଯୁଗଳ ନନ୍ଦନ ଦେଲେ ଟଗା ମୋତେ ବିରୂପାକ୍ଷ,
କୁଟିଳା, ପୂତନା ହୋଇ ଉପସ୍ଥିତ,
କାହ୍ନୁ ପ୍ରାଣନାଶ କରିବାକୁ ବିଷ ଦେଲା ତାକୁ ସ୍ତନ୍ୟ ସହିତ । ୩୧

ଦୂତ ! ଦିନକରେ ଶକଟଚକରେ ମୋର ବଂଶୀଧର ପଡ଼ିଲା,
ମାତ୍ର ଶିବଜାୟା କରିବାରୁ ଦୟା କାୟା ମୋ କାହ୍ନୁର ରହିଲା,
କେତେ ବା, କହିବ ଗୋଟି ଗୋଟି କରି,
ଯେତେ ଭୟଙ୍କର ବିପଦୁଁ ଉଦ୍ଧାର ଲଭିଲା ମୋର ଗିରିଧାରୀ । ୬୨

ମୋ ବଂଶୀବଦନ ବନେ ଏକଦିନ ପଡ଼ିଲା ଅଜଗର ମୁଖେ,
ଦିନେ ଭୟାନକ ଅଦଭୁତ ବକ ଦାରିଲା ତାକୁ ତୀକ୍ଷ୍ଣନଖେ,
ଦିନେ ଗୋ ! ଷଣ୍ଢାଏ ତାକୁ ଆକ୍ରମିଲା,
ନିଜ ପୁଣ୍ୟଫଳେ ସେ ବିପଦକାଳେ ମୋ ନନ୍ଦନ ପ୍ରାଣ ରହିଲା । ୬୩

ସ୍ୱତୀକ୍ଷ୍ଣ ବିଷାଣେ ଏକ ବତ୍ସା ଦିନେ ପ୍ରହାର କଲା ଗୋ ତା ଦେହେ,
ମୋର ଯେତେ ମନା ସେ ନ କରି ଧେନା ବୃନ୍ଦାବନେ ଗଲା ତେବେହେଁ,
ତାହାକୁ, ପ୍ରଚଣ୍ଡ ବନ୍ୟ ଅଶ୍ୱ ଏକ,
ପ୍ରହାରିଲା ପାଦେ ମାତ୍ର ସେ ବିପଦେ କରୁଣା କଲେ ତ୍ରି-ଅମ୍ବକ । ୬୪

ତେବେହେଁ ନିର୍ଦ୍ଦୟ ବିଧାତା ହୃଦୟ ତୃପ୍ତ ନ ହେଲା ଏତେ କରି,
ଧେନିଗଲା ପୁଣି ମୋ ନୟନମଣି କଂସାସୁର ମୋର ଭଗାରି,
ହରିଲା, ମୋର ସେ ଅମୂଲ୍ୟ ରତନ,
କେମନ୍ତେ ଧୈର୍ଯ୍ୟ ଧରିବି ଦୂତ ଗୋ ! କେମନ୍ତେ ଧରିବ ଜୀବନ । ୬୫

ପ୍ରଦୀପ ଆଲୋକେ କେତେ ଯେ ପୁଲକେ ଛାୟାକୁ ଗୃହେଁ ବେଣୁପାଣି,
ହାମ କର ଧରି ଥେଇ ଥେଇ କରି ନାଚେ ସେ କରି କେତେ ଠାଣି,
କିଙ୍କିଣି, ଶବଦେ ପୂରେ ମୋ ମନ୍ଦର,
ହେବାରୁ ସଦନ ସେ ଶବଦ ହୀନ ମୋ ଶ୍ରୁତି ହେଲାଣି ବଧିର । ୬୬

ଯେବେ ବଂଶୀପାଣି ପିଛବର ଜାଣି କହେ. 'ଦିଅ ସର ଜନନୀ !'
ମୋ ଶ୍ରୁତି ବିବରେ ସୁଧାଧାର ଝରେ ସ୍ୱର୍ଗ ଖସି ପଡ଼େ ଅବନୀ,
ସେକାଳେ, ସ୍ୱର୍ଗ ତୁଚ୍ଛ କରେ ମୋ ମନ,
ତାହ୍ନୁ ଡାକ ପୁଣି 'ଜନନୀ' 'ଜନନୀ' ଶୁଣିବ କି ଥାଉଁ ଜୀବନ ? ୬୭

ଅକ୍ରୂର ବଚନ ହୋଇଗଲା ତ ଆନ ନଇଲା ତ ଫେରି କହ୍ନାଇଁ,
ଯଥା ସାଧୁଜନ ସେ କହି ବଚନ ଦେଲା ମୋ ମନକୁ ବୁଝାଇ,
ମୋ ସୁତେ, ଘେନିଗଲା ରଥେ ବସାଇ,
ଆଜ କେତେ ଦିନ ହେଲା ଅବସାନ ଫେରି ନ ଆସନ୍ତି କିପାଇଁ ? ୩୮

କଂସ ନୃପବର ଗଲା ଯମପୁର ସରିଲାଣି ଧନୁ-ଉତ୍ସବ,
ତେଣୁ ମୋ ସନ୍ଦେହ ହୁଏ ଅହରହ କିପାଁ ନ ଆସେ ମୋ କେଶବ,
ଶପଦ, ମୋ ସୁତଙ୍କୁ ଅବା ପଡ଼ିଛି,
ଗୋପପୁରକୁଁ ଗୁରୁ ଯାଇ ମଧୁପୁର ଆଣୁ ସମାଚାର ଯେ ଅଛି । ୩୯

ତା ରଥକୁ ଧରି ଟାଣି ନେବାପାଇଁ କହିଲି ବିନୟବଚନ,
'ହେ କଂସଭଗାରି ! ଯଥା ପ୍ରେତେଶ୍ୱର ହରୁଛ ଦୁଃଖିନୀ ଜୀବନ',
ଦୟା ତ, ନ ହେଲା କ୍ରୂର ଅକ୍ରୂରର,
ମିଥ୍ୟାବାଦୀ ଶଠ କରିଣ କପଟ ନେଲା ମୋ ମୁରଲୀ-ଅଧର ।" ୪୦

ରାଧା ସହଚରୀ ନେତ୍ରନୁ ପୋଛି ବାରି କହିଣ ପ୍ରବୋଧ ବଚନ,
ଶ୍ରୀମତୀର କଥା ପୁଣି କଲା ଗତ ପରିହରି ନନ୍ଦ ସଦନ,
ସଧୀରେ, ପ୍ରବେଶିଲା କୁଞ୍ଜ ବନରେ,
ବିଷାଦେ ସଜଳ ବଦନ ମଣ୍ଡଳ ପ୍ରଫୁଲ୍ଲିତା ନାହିଁ ମନରେ । ୪୧

କେମନ୍ତ ବଚନେ ଶାନ୍ତି ରାଧା ମନେ ଜନମିବ ତାହା ଭାଳିଣ,
ମନ୍ଦ ମନ୍ଦ ଗତି କରି କରି ଦୂତୀ କୁଞ୍ଜବନପଥ ଲଙ୍ଘିଣ,
ସେ ହେଲା, କୁଞ୍ଜ କୁଟୀରରେ ପ୍ରବେଶ,
ଭୁଞ୍ଜେ ଚିନ୍ତାମଣି—ଚରଣ ସୁମରି ଡରି ପଳାଇବ ପ୍ରେତେଶ । ୪୨



# ଦଶମ ଛାନ୍ଦ

ରାଗ—ରସକୋଇଲି *

## ରାଧିକାର ବିଳାପ

ନନ୍ଦ ସଦନରୁ ଦୂତିକା ଫେରି,  କୁଞ୍ଜ କୁଟୀରେ ଭେଟିଲା କିଶୋରୀ,
ନାହିଁ ବଳ ଅଙ୍ଗେ ରସିଛି ଢଳି,  ପଡ଼ିଛି କି ହେମଲତା ଝାଉଁଳି,
ନିଦାଘତପନ ତାପେ ଯେ,
ନବଣୀପୁତ୍ତଳି ଥୁଆ ବା ହୋଇଛି ପ୍ରବଳାନଳ ସମୀପେ ଯେ । ୧

ବାମକରପଦ୍ମେ ଗଣ୍ଡ ନିବେଶି,  ବସିଛି ମଉନେ ଭ୍ରମରକେଶୀ,
ସନ୍ତାପ କାଳିମା ଖେଳେ ବଦନେ,  ଗ୍ରାସେ କି ରାହୁ କୁମୁଦରଞ୍ଜନେ,
ମହୀକି କରି ନୟନ ଯେ,
ସଫରୀ ନୟନୁଁ ଝରେ ଅଶ୍ରୁବିନ୍ଦୁ ମୁକ୍ତା କି ଉଗାଳେ ମୀନ ଯେ । ୨

ବିରହ-ପିଞ୍ଜରେ ହୁଏ ଅଧୀର,  ତାର ନବବନ୍ଧ ମାନସ-କୀର,
ସ୍ୱେଦ ବିନ୍ଦୁ ବିନ୍ଦୁ ଗଳେ କପାଳେ,  ସୁଧାବିନ୍ଦୁ କିବା ଚନ୍ଦ୍ର ମଣ୍ଡଳେ,
ଶ୍ୱାସ ବହେ ଘନ ଘନ ଯେ,
ଦକ୍ଷିଣଚରଣ ବୃଦ୍ଧ ଅଙ୍ଗୁଳିରେ ମହୀରେ କରେ ଲେଖନ ଯେ । ୩

ଅନ୍ୟକଥା କିଛି ନାହିଁ ମନରେ,  ଦେଖେ ଘନଶ୍ୟାମ ରୂପ ଧ୍ୟାନରେ,
ନୀଳକାନ୍ତ ଜିଣି ନବ-ଜଳଦ,  ରଙ୍ଗାଧର ଫୁଟନ୍ତ କୋକନଦ,
ନାସାତିଳ ଫୁଲ ଜିଣି ଯେ,
ନାସାତଳେ ଦୋଳେ ମୁକ୍ତା କିବା ଶୋଭେ ନଭେ ଭୃଗୁବଂଶ ମଣି ଯେ ।୪।

ଗୁଞ୍ଜା କେକୀପୁଚ୍ଛେ ମଣ୍ଡିତ ଚୂଳ,  କୁଟିଳ ଚଞ୍ଚଳ ନୀଳ-କୁନ୍ତଳ,
ଅରକ୍ତ-କଳା-ଧଳା-ଡୋଳା ଖେଳା,  ଅଲକ୍ଷ୍ୟ ବକ୍ଷେ ଲୁଚୁ ବନମାଳା,
ରତ୍ନହାର ପୀତବାସ ଯେ,
ମୁରଲୀମଣ୍ଡିତ ସୁରଙ୍ଗ ଅଧରେ ସୁମନ୍ଦ ହାସ ପ୍ରକାଶ ଯେ । ୫

---

* ବୈଦେହୀଶବିଳାସ "ବିଭୂଷଣ ପୁଷ୍ପେ ଯା କାନ୍ତ ଜାଣ" ରାଗେ

ନୟନ ମୋହନ ବଙ୍କିମଚାଣି, ଚଞ୍ଚଳ ଚଉରଛ ଭେଳ ଗୃହାଣି,
ଭାଳଭୁଜଙ୍ଗିନୀ ଜିଣି ଭ୍ରୂଲତା, ମନୋରମ ଶୁଭ୍ର ଗଣ୍ଡସ୍ଥ ଶତା,
ରମଣୀୟ କମ୍ବୁଗ୍ରୀବା ଯେ,
ଶ୍ରବଣମୂଳରେ ମକରକୁଣ୍ଡଳ ନଭେ କି ଦ୍ୟୁମଣି ଶୋଭା ଯେ ।୬

ଦୂତୀର ଚରଣ ନୂପୁରଧ୍ୱନି, ଦୂରୁଁ ଶୁଣି ଶ୍ୟାମ-ମନମୋହିନୀ,
ଭାଳିଲ କୃଷ୍ଣଙ୍କ ଆସନ୍ତି ଶ୍ୟାମ, ଉଲ୍ଲାସେ ତା ହୃଦ ହେଲା ଉଦ୍ଦାମ,
ଦ୍ରବ ହେଲା କଳେବର ଯେ,
ସେକାଳେ ସର୍ବାଙ୍ଗେ ସଞ୍ଚାର ହେଲା କି ମୃଦୁସ୍ରୋତ ତାଣ୍ଡବର ଯେ ।୭

ଧସ୍ୱସନ୍ ବେଗେ ଉଠି ଶ୍ରୀମତୀ, ଦେଖିଲା ସମ୍ମୁଖରେ ଆସଇ ଦୂତୀ,
ତା ମୁଖେ ବିଷାଦ ହୋଇଛି ବୋଲି, ତେଣୁ ଆଶାଲତା ଗଲା ଝାଉଁଳି,
ଯେସନେ ନବଅଙ୍କୁର ଯେ,
କ୍ରମେ କ୍ରମେ ହୁଏ ପତ୍ରଶୂନ୍ୟ ମ୍ଳାନ ନ ପାଇ ନିଦାଘେ ନୀର ଯେ ।୮

ବ୍ୟଗ୍ରନୟନରେ ଦୂତୀକି ଚାହିଁ, ପୁଚ୍ଛିଲା କନକ-କମଳମୁହିଁ,
"କହ ଦୂତି କହ ବେଗେ ସନ୍ଦେଶ, ବାହୁଡ଼ିଲେଣି କି ମୋ ଜୀବନେଶ,
ମଥୁରାରୁ ଯାତ୍ରା ଦେଖି ଗୋ,
କହ କେତେବେଳେ ଆସିବେ କୃଷ୍ଣଙ୍କୁ ମୁଁ ବସେ ପଥ ନିରେଖି ଗୋ" ।୯

ପୁଣି ପୁଚ୍ଛିଲା ସେ ହୋଇ ଅଧୀର, "କହ ଦୂତି ! ବାର୍ତ୍ତା ପ୍ରାଣନାଥର,
ବିରହଯାତନା ନ ପାରେ ସହି, ରଖ ପ୍ରାଣ ଶୁଭବାରତା ଦେଇ,
ବାରତା କହ ସତ୍ୱର ଗୋ,
ବିଷାଦମଳିନ ବଦନ ନିରେଖି ମୋ ମନ ହୁଏ କାତର ଗୋ ।୧୦

କହିଲା ଦୂତୀ, "କି କହିବି ରାଇ ! ନାହାନ୍ତି ଆସି ବ୍ରଜକୁ କହ୍ନାଇ,
ଦେଖିଲି ଯଶୋଦା ନନ୍ଦଭୂପାଳ, କାନ୍ଦନ୍ତି କାତରେ ତାଡ଼ି କପାଳ,
କାନ୍ଦ କାନ୍ଦ ନନ୍ଦ ଅବ ଗୋ,
ମହକ ଅଣ୍ଡାଳ କାନ୍ଦୁଛନ୍ତି କହି 'ହା ରାମ' 'ହା ମୋ ଗୋବିନ୍ଦ' ଗୋ ।୧୧

ହୋଇଛି ହତଶ୍ରୀ ନନ୍ଦସଦନ, ଯେସନେ ଶରୀର ଶୂନ୍ୟଜୀବନ,
ଧେନୁ ବତ୍ସାଗଣ ନ ଯାଇ ବନେ, ଭ୍ରମନ୍ତି ଆହାର ବିନା ଅଙ୍ଗଣେ,
ନୀରବ ଆନନ୍ଦଧ୍ୱନି ଗୋ,
କପୋତୀ ପରିପ୍ରାୟେ ଝୁରି ହେଉଛନ୍ତି ଯଶୋଦା ଲୋଟି ଅବନୀ ଗୋ ।୧୨

ନ କର ଭାବନା କରକଦନ୍ତି ! ଯେତେ କାଳ ଥିବ ପ୍ରାଣେ ଏ ଦୂତୀ,
ଦେଖିବ କେମନ୍ତେ ନନ୍ଦନନ୍ଦନ, ବ୍ରଜରେ ଲଗାଇ ଦୁଃଖ-ଦହନ,
ରହିବେ କଂସନଗରୀ ଗୋ,
ଦେଖିବ ମଥୁରାଧାମେ କେଉଁ ରମା ଦୂତୀଠାରୁ ସୁଚତୁରୀ ଗୋ ।"୧୩

ଦୂତୀ ବାଣୀ ଶୁଣି କହିଲେ ରାଧା, "ମୋଠାରେ ବନ୍ଧୁର ନାହିଁ ଶରଧା,
ନିଶ୍ଚୟ ମୋଠାରେ କରି କପଟ, ଗଲେ ମଧୁପୁର ବରଜ-ନଟ,
ଚରଣ ବରଜେ ଛନ୍ଦ ଗୋ,
ଶମନନିବାସେ କଂସ ଗଲା; କାହିଁ ନ ଆସୁଛନ୍ତି ଗୋବିନ୍ଦ ଗୋ ।"୧୪

ଏତକ କହୁଣ ଗୋପିନୀମଣି, ନୀରବେ ନେତ୍ରରୁ ଢାଳିଲା ପାଣି,
କଙ୍କଣ ନୂପୁର ଏ ବେନି ଖଣ୍ଡି, ପକାଇଲା ଅନ୍ୟ ଭୂଷଣ ଫେଡ଼ି,
କହିଲା, "ନ ପାରେଁ ବହି ଗୋ,
ଏତେ ଅଳଙ୍କାର କପାଇଁ ମୋହର ଦେହେଁ ଦେଲ ପ୍ରାଣସହି ଗୋ ।"୧୫

କଣ୍ଠ କବରୀର କୁସୁମଭୂଷା, ପକାଇଲା ଫେଡ଼ି ବରଜଯୋଷା,
କହିଲା, "ସଖି ! ଏ ଅଭାଗୀ ଲାଗି, କଲ ଭୂଷାହୀନା ଲତାସୁଭାଗୀ,
ତାର ବନ୍ଧୁ ତରୁବର ଗୋ,
ମୁଁ ହତଭାଗିନୀ ବନ୍ଧୁବିରହିଣୀ କି କାର୍ଯ୍ୟ କୁସୁମେ ମୋର ଗୋ ?୧୬

ଆଜି କି ମୋ ଭାଗ୍ୟେ ଅଛୁ ସଜନି ! ତାର ମୁଁ ଗୁନ୍ଥିବି କୁସୁମ ଆଣି,
କରିବ ଭୂଷିତ କଣ୍ଠ କବରୀ, ଦେବ ବନ୍ଧୁ ଗଲେ ଆଦର କରି,
ବୃନ୍ଦାବନେ ନୀପମୂଳେ ଗୋ,
କୁସୁମ ପ୍ରବାଳେ ରଚିତ ମୁକୁଟ ପିନ୍ଧାଇବ ବାଙ୍କ ଚୂଳେ ଗୋ ।୧୭

ବନ୍ଧୁ ବାମକର ଅଙ୍ଗ କି ଧରି, ଯମୁନାତଟିନୀ ତଟେ ବିହରି,
କରିବ ସୁମନ୍ଦବାତ ସେବନ, ବୋଲିବ ନୀଳାଙ୍ଗେ ବଧୂଚନ୍ଦନ,
ପୋଛୁ ସ୍ୱେଦବାରି ବାସେ ଗୋ,
ଭୁଞ୍ଜାଇ ବଡ଼ିଆ ମିଶାଇବ ନିଜ ହାସ ବନ୍ଧୁ ମନ୍ଦହାସେ ଗୋ । ୧୮

ଦିନେ ଦିନେ ମନ୍ତ୍ରି ଶତମମାନେ, କି କଷ୍ଟ ଦେଲ୍ ମୋ ପ୍ରାଣନାଥନେ,
ସେହି କଥାମାନ ଅବା ସୁମରି, ନ ଆସନ୍ତି ବ୍ରଜଧାମକୁ ଫେରି,
ଯାଇ ଦୂତ ! ମଧୁପୁର ଗୋ,
ମୋର ଅପରାଧ କ୍ଷମା କରାଇଣ ଉଦନ୍ତ ଆଣ ବନ୍ଧୁରେ ଗୋ ।"୧୯

କହୁଁ କହୁଁ ଖେଦ ଅତି ନପଟେ ଢଳିଣ ପଡ଼ିଲେ ରାଧା ଭୂତଳେ,
ଅବସନ୍ନ କ୍ରମେ ହେଲା ଶରୀର, ଝରିଲା ଅଙ୍ଗରୁ ଝର୍ଝର ନୀର,
ସଖୀମାନେ ମନାକୁଳେ ଯେ,
"କି ହେଲା ରାଧାର କି କଲୁ ବିଧାତା" କହୁଣ କାନ୍ଦିଲେ ରୋଳେ ଯେ ।

ଅତି କ୍ଷୀଣସ୍ୱରେ ଭାଷିଲେ ରାଈ, "ବିଧି ଅନୁକୂଳ ମୋତେ ଗୋ ସହି !
ଏହିକ୍ଷଣି ଛାଡ଼ି ଯିବ ମୋ ପ୍ରାଣ, ପାଇବି ବିରହକଷ୍ଟରୁ ତ୍ରାଣ,
କିନ୍ତୁ ସଖୀ ମୋ ଅନ୍ତରେ ଗୋ,
ନ ପାଇଲି ଦେଖା ଜୀବନଧନର ନ ପାଇବି ଏ ଜନମେ ଗୋ । ୨୧

ଦୟା କର ଏହି ଦୁଃଖିନୀ ଜନେ, ଲେଖ ଶ୍ୟାମ ନାମ ମୋ ଅପଘନେ,
ଯତନେ ମୋ କର୍ଣ୍ଣେ କର କୀର୍ତ୍ତନ, ଶ୍ୟାମ ଶ୍ୟାମ ଶ୍ୟାମ ନନ୍ଦନନ୍ଦନ,
କାଷ୍ଠ କର ଆହରଣ ଗୋ,
ତହିଁରେ ମୋ ପିଣ୍ଡ ରଖି ସହଚରୀ ! ଲଗାଇ ଦେବ ଜ୍ୱଳନ ଗୋ । ୨୨

ମୋ ଦେହଭସ୍ମ ଘେନି ସହଚରି ! ବେଗ ହୋଇ ଯିବ ମଧୁନଗରୀ,
ଯେ ପଥେ ବନ୍ଧୁ କରନ୍ତି ଗମନ, ବିଞ୍ଛି ହୋଇବ ଭସ୍ମ କରି ଯତନ,
ବନ୍ଧୁ ଚରଣ-ସରୋଜେ ଗୋ,
ରେଣୁକଣା ହୋଇ ଲାଗିଣ ରହିବ ମିଶିଣ ଚରଣରଜେ ଗୋ । ୨୩

ଭେଟ ଯଦି ହେବ ବନ୍ଧୁ ସଙ୍ଗରେ, ଜଣାଇବ ତାଙ୍କ ପାଦପଦ୍ମରେ,
ତୁମ୍ଭ ଚରଣଦାସୀ ରାଧା ଅଭାଗୀ, ଘେନିଛି ବଦାନ୍ୟ ଜନମ ଲାଗି,
ମାଗିଛି ଭବ ଶରଣ ହେ,
ତାଙ୍କୁ ତଳେ ସ୍ଥାନ ମନ ମଧ୍ୟେ ଦାନ ବାରେ କରିବ ଶ୍ରୀପତି ହେ !"୨୪

କହିଲ ଦୂତି, "ନ ମାନିଲ୍ ମନା, ମୋ କଥା ନ କଲ୍ ଘେନା ସୁମନା,
ବଳାଇଲ୍ ପରପ୍ରୀତିରେ ମତି, ତେଣୁ ସହୁ ସିନା ଏଡ଼େ ଦୁର୍ଗତି,
ପରପୀରତି ଅଚର ଗୋ,
ପର ପ୍ରୀତି ହିନା ଅଛଇ ନବୀନା ! ସକଳ ଗାର ପ୍ରଚାର ଗୋ । ୨୫

ପରପୁରୁଷେ ତ ଯଥା ଭ୍ରମର, ନାହିଁ ଏକ ଫୁଲେ ପ୍ରୀତି ତାଙ୍କର,
ନବ ନବ ଫୁଲ ଇଚ୍ଛନ୍ତି ନିତି, ନୁହେ ସ୍ଥିର ଶଠ ଲମ୍ପଟ ପ୍ରୀତି,
ଯେତେ ଲମ୍ପଟପୁରୁଷ ଗୋ,
ଅଳି ସୁଧାଭାଣ୍ଡ ଦେଇ କରେ କାଳ ଦିଅନ୍ତି ବିଷମ ବିଷ ଗୋ ।୨୬

ମଜ୍ଜିଲ୍ ଶ୍ରୀମତି ! କଳଙ୍କ ପଙ୍କେ, ଶୁଭିଲ୍ ତୋ ନିନ୍ଦା ଏ ଗୋପପାଙ୍କେ,
ପଡ଼ିଲ୍ ଗୋଷ୍ଠରେ କେତେ ଚର୍ଚ୍ଚା, ପରପ୍ରୀତି ପାଇଁ ସିନା ନବୀନା !
ଶେଷେ ଏହି ପ୍ରତିଫଳ ଗୋ,
କହୁଥିଲି ପରା କ୍ଷଣପୀରତିଅ ଅଟନ୍ତି ଯଶୋଦାବାଳ ଗୋ" ।୨୭

ଦୂତୀବାଣୀ ଶୁଣି କହିଲ ରାଈ, "ନାରଦ ମୁଖରୁ ମୁଁ ଶୁଣିଛଇଁ,
ଜଗତର ପତି ବ୍ରଜବିଳାସୀ, ଜନମେ ଜନମେ ମୁଁ ତାଙ୍କ ଦାସୀ,
ଦୂତୀ ! ମୁଁ ନୁହେଁ ଅସତୀ ଗୋ,
ଯେ ଜନ କୁଳଟା ବୋଲି ମୋତେ ଭାଳେ ସେ ଜନଟି ଭ୍ରାନ୍ତମତି ଗୋ ।

ଯେ ଅଟନ୍ତି ବନ୍ଧୁ ଏ ଜଗତର, ନ ହୁଅନ୍ତି ତଳେ ତାହାଙ୍କ ଅନ୍ତର,
ଯା ଦୟା ପ୍ରତିଜୀବେ ନିରନ୍ତର, ସେ କି ଅଟନ୍ତି ଗୋ ପର ମୋହର,
ପରାପର ଯାର ନାହିଁ ଗୋ,
କେମନ୍ତେ କହୁଛ ମନରେ ତାହାଙ୍କ ପର ବୋଲି ପ୍ରାଣସହି ଗୋ ।୨୮

ପୁରୁଷୋତ୍ତମ ଯାର ଏକଧ୍ୟାନ, ପୁରୁଷୋତ୍ତମ ଯାର ଏକ ଜ୍ଞାନ,
ତାଙ୍କଠାରେ ଯାର ଏକାନ୍ତ ଭକ୍ତି, ଦୂତ ଗୋ ! ସେ ନାରୀ ଜଗତେ ସତୀ,
ବିଶ୍ୱପତି ପଦ୍ମନେତ୍ର ଗୋ,
ଗୃହେ ଯେତେ ପତି ସକଳେ ଅଟନ୍ତି ବିଶ୍ୱପତି ଛାୟା ମାତ୍ର ଗୋ ।୬୦

ଦେବତାପୂଜକ ଜନ ଯେସନେ, ପ୍ରତିମାର ଛାୟା ଦେଖି ଦର୍ପଣେ,
ପ୍ରେମରେ କରନ୍ତି ତହିଁ ଅର୍ପଣ, ପବିତ୍ର କୁସୁମ ବାରି ଚନ୍ଦନ,
ଦେବତାର ପ୍ରୀତି ପାଇଁ ଗୋ,
ଦର୍ପଣେ ଶମ୍ପିତ ଦେବ ମୂରତିକି ପୂଜାକାଳେ ଥାନ୍ତି ଧ୍ୟାଇ ଗୋ । ୬୧

ଦୂତ ଗୋ ! ତେସନେ ଯେ ନାରୀ ସତୀ, ଲଭିବାକୁ ନିତ୍ୟପତିପୀରତି,
ଗୃହେ ନିତି ପତିପୂଜା କରନ୍ତି, ବନ୍ଧୁ ପ୍ରତିମୂର୍ତ୍ତି ସିନା ଗୋ ପତି,
ମୁଁ ପୂଜିଲି ସତ୍ୟପତି ଗୋ,
ବ୍ରଜପୁର ଜନ ଭ୍ରାନ୍ତିରେ ପଡ଼ିଣ ମୋତେ ବୋଲନ୍ତି ଅସତୀ ।ଗୋ ।୬୨

ଦିନେ ଦିନେ ଗର୍ବେ ହୋଇ ମଗନ, ଭୁଲିଲି ଶ୍ୟାମ ମୋ ପ୍ରେମ ଅଧୀନ,
ମୋ ସେହି ଗରବ ଖର୍ବିବା ପାଇଁ, ଗରବଗଞ୍ଜନ ବାନା କହାଇ,
ମୋତେ ବା ଛଳେ ଅନ୍ତର ଗୋ,
ଧିକ ମୋ ଗରବ ଯା ପଦରାଜୀବ ଲୋଡ଼ନ୍ତି ବ୍ରହ୍ମା ଶଙ୍କର ଗୋ ।" ୬୩

ସେ କାଳେ ସୁଚତୁରୀ ଇନ୍ଦୁରେଖା, ଧରି ଶ୍ୟାମବେଶ ଦେଲାକ ଦେଖା
ଶ୍ୟାମରୂପ ଯହିଁ ପାଶେ ଦେଖିଲା, ମାନିନୀ ସୁମୁଖୀ ଉଠି ବସିଲା,
ସମ୍ଭାଳି ବାସ ସତ୍ୱର ଯେ,
ଅବଗୁଣ୍ଠନରେ ଢାଙ୍କିଲା ସଲଜ୍ଜ ବଦନ-ରଜନୀକର ଯେ । ୬୪

ସଞ୍ଚରିଲା ସୁଧା ଅଙ୍ଗରେ ବଳ, ହୃଦୟ-ସାଗର ହେଲା ଚଞ୍ଚଳ,
ମୁଖଚ୍ଛଦ ମଧ୍ୟେ ନେତ୍ର ପଠାଇ, ସେ ଛଦ୍ମବେଶକୁ ଚାହିଁଲେ ରାଇ,
ଜାଣିଣେ ଗୋପିନୀମଣି ଯେ,
କହିଲେ, "ସୁବର୍ଣ୍ଣକାର ନେତ୍ରେ କଣ୍ଟା ନ ହୁଏ କି କାଚ ମଣି ଯେ ।"୬୫

କହିଲା ଦୂତୀକା, "ଏ କୁଞ୍ଜବନେ, ବିଳମ୍ବ ନ କର ଚନ୍ଦ୍ରବଦନେ ।
ଦେଖ ଦେଖ ଅଜ୍ଞ ଅଷ୍ଟମୀ ଶଶୀ, ଅସ୍ତଗିରିଶିରେ ସାଜଇ ହସି,
ଚାଲ ଗୋ ଯିବା ସଦନେ ଯେ,
ନ କର ଭାବନା କରକ-ବଦନା ଆଣିଦେବି ନନ୍ଦଘନେ ଯେ" । ୩୬

ଉତ୍ତରିଲ ରାଧା "ଶୁଣ ଗୋ ସହି, ! କି କରିବି ଶୂନ୍ୟସଦନେ ରହି ?
ପରିହରି ଏହି କୁଞ୍ଜକାନନ, ସଦନେ ଯିବାକୁ ନ ବଳେ ମନ,
ଚପଳା ଯଥା ମେଘରେ ଗୋ,
ବନ୍ଧୁ ଆଗମନ ଆଶା ପୁନଃପୁନଃ ନିରାଶା-ମେଘେ ସଞ୍ଚରେ ଗୋ ।୩୭

ନ ହୁଏ ପ୍ରତୀତ ସତେ ପାସୋରି, ଦେଲେଣି ମୋ କଥା ମୁରଲୀଧାରୀ,
ଥାନ୍ତା ଯଦି ମୋର କପୋତ ପକ୍ଷ, ଉଡ଼ି ଯାନ୍ତି କରି ମଥୁରା ଲକ୍ଷ,
ପଡ଼ନ୍ତି ବନ୍ଧୁ ଚରଣେ ଗୋ,
ସେ କରନ୍ତେ କ୍ଷମା ଦେଖନ୍ତୁ ତାଙ୍କ ସରି କିଏ ଅଛି କ୍ଷମାଗୁଣେ ଗୋ ।"୩୮

ଭୂଷିତା ରାଧିକା ଶ୍ରୀକୃଷ୍ଣ ଉପସନେ, ନିର୍ଦ୍ଦେଶେ ରହେ ଊର୍ଦ୍ଧ୍ୱନୟନେ,
ଶ୍ୟାମଆଗମନପଥ ନିରେଖି, ଯାମିନୀ ଉନିଦ୍ରେ ନେଲା ସୁମୁଖୀ,
ହେଲା ଶେଷ ବିଭାବରୀ ଯେ,
ବିଷାଦେ ନିରାଶେ ଚଉଦିଗେ ଚାହିଁ କହିଲା ବ୍ରଜସୁନ୍ଦରୀ ଯେ । ୩୯

ନ ଥିବି କୁଞ୍ଜେ ନ ଯିବି ମନ୍ଦିରେ, ଝାସ ଦେବି ଆଜ ଯମୁନାନୀରେ,
କି ଫଳ ରଖି ଏ ଦଗ୍ଧଜୀବନ, ଜାଳଇ ହୃଦୟେ ଦୁଃଖ-ଦହନ,
ପାଷାଣହୃଦୟ ଧରି ଗୋ,
ଗଲେ ମଧୁପୁର ମୁରଲୀଅଧର ଆଉ ନ ଆସିବେ ଫେରି ଗୋ ।" ୪୦

କହିଲା ଦୂତିକା ସେ କଥା ଶୁଣି, "ନ କର ରାଧିକେ ମନେ ଭାବୁଣି,
କାଲି ମୁଁ ମଥୁରା କରି ଗମନ, ବାନ୍ଧି ଆଣିଦେବି ନନ୍ଦନନ୍ଦନ,
କିପାଇଁ ବସୁ ବିଷାଦେ ଗୋ,
ତୋ ଦୃଢ଼ ପୀରତି ଶୃଙ୍ଖଳରେ ଲାଗି ରହିଅଛି ଶ୍ୟାମପାଦେ ଗୋ ।"୪୧

ଦେବ ଆଶ୍ୱାସନା ସଙ୍ଗିନୀ ଧୀରେ, ନେଲେ ଶ୍ରୀମତୀଙ୍କ ଯମୁନାତୀରେ,
ବିରହ-ଜ୍ୱଳନ ଜଳିଲା ଅତି, ଲୋଟିଲେ ଧରଣୀତଳେ ଶ୍ରୀମତୀ,
ହେଲା ତନୁ ଜରଜର ଯେ,
ରାଧାଙ୍କୁ ସଖୀଏ ନେଇ ଶୁଆଇଲେ ଶେଯାଇ ପଦ୍ମପତର ଯେ । ୪୨
ଉଷୀର ଚନ୍ଦନ ରାଧାର ଗାତ୍ରେ, ଲେପିଣ ବାନ୍ଧିଲେ କମଳପତ୍ରେ,
କନକପ୍ରତିମା ଶ୍ୟାମମୋହିନୀ, ହେଲା କ୍ରମେ କ୍ରମେ ପାଣ୍ଡୁବରଣୀ,
ବୀଣାବାଣୀ ହେଲା କ୍ଷୀଣ ଯେ,
ହେଲେ ସଖୀଚୟ ମନରେ ଅଥୟ ଶ୍ରୀମତୀ ଦଶା ଦେଖିଣ ଯେ । ୪୩
ବେଗେ ପଦ୍ମପତ୍ରେ ଆଣିଣ ନୀର, ସିଞ୍ଚିଲେ ଦେହେ ହେମବରଣୀର,
ଶ୍ୟାମ ବିନା ଯାର ଅନ୍ତର ଜଳେ, ତାର ତାପ ଶାନ୍ତ ଲଭେ କି ଜଳେ ?
ଜଳରେ ଦ୍ୱିଗୁଣ ଜଳେ ଯେ,
ଶରତେ ଶିଶିର ପତନ ପ୍ରକାର ତପନତପ୍ତ କମଳେ ଯେ । ୪୪
ସଖୀମାନେ ଅତି ଦୁଃଖିତ ମନେ, ରାଧାଙ୍କୁ ଶୁଶ୍ରୂଷା କଲେ ଯତନେ,
କରିବାକୁ ରାଧା ତାପ ଖଣ୍ଡନ, ନାନା ବିଧାନେ ସେ କଲେ ଯତନ,
ହୋଇଲା ଏ ଛାନ୍ଦ ଶେଷ ଯେ,
ବୁଧେ ! ଚିନ୍ତାମଣିଚରଣ ସ୍ମରି ନ ବହିବ ପାପ ନାଶ ଯେ । ୪୫



## ଏକାଦଶ ଛାନ୍ଦ

ଲଳିତ—ବୃତ୍ତ

### ରାଧିକାର ଶୋକ

ବୃଥା ଯାପି ନିଶା କୁଞ୍ଜେ ଅତି ବିଷାଦେ ଶ୍ରୀମତୀ,
ଫୁଲଶେଯ ପାଶେ ବସି କାନ୍ଦି କହିଲେ ଭାରତୀ । ୧
ନିଶି ଅସି ଶେଷ ପରି ମନ୍ଦ ମନ୍ଦ ହସେ ଊଷା,
ହେଲାଣି ଶୀତଳ ନାସାମଣି ମ୍ଳାନ ଫୁଲଭୂଷା । ୨

କଣ୍ଠତଟେ ସିନ୍ଧୁଫେନହାର ଲଗଇ ଶୀତଳ,
ଶୀତଳ ଶ୍ରବଣମୂଳ ଶୀତଳ ମଣିକୁଣ୍ଡଳ । ୩
ତାମ୍ବୂଳର ବୋଲ ସ୍ଥୂଳ ଓଷ୍ଠ ଅଳପ ଅଳପ,
ପ୍ରଦୀପର ଶିଖା କ୍ଷୀଣ ଧୀରେ ହୁଏ ଦପଦପ । ୪
ନାସାଗ୍ର ଶୀତଳ ଅତି ଲଲାଟଦେଶ ଶୀତଳ,
ନୟନ ଅବଶ ଭଗ୍ନ ଅପାଙ୍ଗ ହୁଏ ସଜଳ । ୫
ନିଦ୍ରା ପରଦର ପ୍ରାଚୀ ଘୁଞ୍ଚି କଇରବଅକେ * ।
ତେଜି ତାହା ପୁଣି ସଜ ହେଉଛୁ ସଜ-ପଙ୍କଜେ । ୬
ଦେବେ ନଭେ ନିଦ୍ରା ତେଜି କ୍ରମେ କ୍ରମେ ଗୋଟି ଗୋଟି,
ନିଭାଇଣ ଦେଉଛନ୍ତି ତାଙ୍କ ଅସଂଖ୍ୟ ଦୀପଟି । ୭
ନଳିନୀ ଜାଗିଣ ସରେ ହସେ କୁମୁଦୀ ପାଶର,
ତାହା ଦେଖି ଶଶୀ ଲାଜେ ଗୋଟାଇ ନେଉଛୁ କର । ୮
ଦେଖି ସଉତେ ଲୋଭେ ଶଠବର ସମୀରଣ,
କୁସୁମକୁଳକୁ ମୋହ ଦିଏ ଧୀର ଆଲିଙ୍ଗନ । ୯
ସରଳପ୍ରେମରେ ମାତି ବାତପ୍ରେମଆଲିଙ୍ଗନେ,
ବୃନ୍ତରୁ ପଡ଼ନ୍ତି ତେଣିଁ ସୁମନା ପ୍ରଫୁଲ୍ଲମନେ । ୧୦
କପଟୀ ସମୀର ତାଙ୍କୁ ତେଜୁଅଛୁ ସହଚର !
ତଳେ ଦଳୁଛନ୍ତି ହଂସ ସୁମନାଏ ଯଥା ପର । ୧୧
ଦେଖି ଲତାପ୍ରୀତି ମାଗେ ବନପ୍ୟେ ଗୁଞ୍ଜର ଅଳି,
ମାନିନୀ ଲତିକା ତାଙ୍କୁ ଠେଲିଦିଏ ରୋଷେ ଚଳି । ୧୨
ନିରଶ ମନରେ ଅଳି ଗଲେ ଫେରି ସହଚର !
ମାନିନୀ ଲତିକା ଦଶା ହେବ ଯଥା ଦଶା ପର । ୧୩
ଉନିଦ୍ରେ ନେଲି ଯାମିନୀ ସଜନି ! କୁଞ୍ଜସଦନେ,
ନ ଆସିଲେ ପ୍ରାଣଧନ ଦାରୁଣ ହୋଇଣ ମନେ । ୧୪

---

* ପ୍ରଥମେ ଉଷାକାଳରେ ପୂର୍ବଦିଗ ଶୁଭ୍ର, ତତ୍ପରେ ରକ୍ତିମବର୍ଣ୍ଣ ହୁଏ

ସେ ନୀଳ ଉଜ୍ଜ୍ୱଳକାନ୍ତି ଖେଳେ ନେତ୍ରେ ଧବା ନାଶି,
ସୁହାସ-ହସିତ-ମୁଖ-ଶଶୀ ଦଶେ ଦଶିଦଶି । ୧୫
ଗଲ ଦିନ୍ ମୋ ନୟନ-ଗୃତଙ୍କ-ନବ-ନୀରଦ,
ଶୁଣି ନାହିଁ ମୋର ଶ୍ରୁତି ଶ୍ରୁତି-ରଞ୍ଜନ ଶବଦ । ୧୬
ନୀଳକାନ୍ତ ବନା ମୋର ନେତ୍ର କରେ ଉପବାସ,
ମୋର ନାସା ଘ୍ରାଣି ନାହିଁ ଘ୍ରାଣ-ପ୍ରୀତିକର ବାସ । ୧୭
ଲଗି ନାହିଁ ମୋ ଅଧରେ ରସନାସୁଖଦ ରସ,
ସ୍ପରଶି ନାହିଁ ମୋ ଅଙ୍ଗ ମୃଦୁ ଶୀତଳ ସ୍ପରଶ ।" ୧୮

ଦୂତୀର ଉକ୍ତି

"କପାଇଁ ଶ୍ରୀମତି ! କହୁ ବଚନ ବାତୁଳ ତୁଲ,
ଶ୍ୟାମ କି ଗୋ ! ଏ ଜଗତେ ସୁଖ କାରଣର ମୂଳ ? ୧୯
ଏ ନୀଳ ଉଜ୍ଜ୍ୱଳ ନଭ ଗ୍ରହ ତାର୍‌ ସମନ୍ୱିତ,
ଏ ନୀଳ ନୀରଦମାଳ ବାସବଶୃପେ ଶୋଭିତ । ୨୦
ଏ ଶ୍ୟାମ ତମାଳମାଳ ନାନା ଲତାଜାଲଶୋଭା,
ଯାଙ୍କ ଶୋଭା ଦରଶନେ ତୋ ନେତ୍ର ନୋହେ କି ଲୋଭା ? ୨୧
ହଂସ କୋକିଳାଦ୍ୟ ସୁଧା-କଣ୍ଠ ବିହଙ୍ଗ କୂଜନ,
ନ ବାଜେ କି ତୋ ଶ୍ରୁତିରେ ନୁହେ କି ଶ୍ରୁତିରଞ୍ଜନ ? ୨୨
ଛଣାସୁଧାସରଜିଣା ପଣା ଦେଉଁ ବାରମ୍ବାର,
ତହିଁରେ କି ନ ହୁଅଇ ସୁଖ ତୋର ରସନାର ? ୨୩
ଚନ୍ଦନ କର୍ପୂର ବାଧୁଳର ସୁଧୀର ସମୀର,
ଉଶୀର କୁସୁମଶେଯ ନ ତର୍ପେ କି ତୋ ଶରୀର ? ୨୪
ମାଳତୀ ଯୂଥିକା ଜାତି ଚମ୍ପା ମଲ୍ଲୀ ନାଗେଶ୍ୱର,
ପାଟଳୀ ନବମଲ୍ଲିକା ଗିରିମଲ୍ଲୀ କରବୀର । ୨୫
ଏ ଅଦ କୁସୁମ ଗନ୍ଧଭରେ ହୋଇ ପ୍ରପୀଡ଼ିତ,
ମନ୍ଦଗତି ଗନ୍ଧବହ ବହେ ଦଗ ଆମୋଦିତ । ୨୬

ସେ ଗନ୍ଧ କି ଲଗୁ ନାହିଁ ତୋ ନାସାରେ ଚରହୁଣି !
କିପାଇଁ ଗୋ କହୁଅଛୁ ବାଣୀ ବାତୁଳାଣୀ ଜଣି ? ୨୭

ତୋ ବନ୍ଧୁର ତ ବନ୍ଧୁରହୃଦୟ ଅଟେ ସରଳେ !
ନ ଶୁଣି ମୋ ବାଣୀ ଅଣି ସେ ଫଣୀକି କଲ୍ଲୁ ଗଲେ !” ୨୮

## ଶ୍ରୀମତୀର ଉକ୍ତି

“ଏ ଅସୀମ ନୀଳନଭ ବନ୍ଧୁକାନ୍ତିଛାୟା ସିନା,
ମଧୁରଭାଷାରସ୍ୱାନ ବନ୍ଧୁ ପ୍ରେମରସ କଣା । ୨୯

ମାର୍ଦ୍ଦବ ଲଭେ ମାର୍ଦ୍ଦବ ପାଇ ବନ୍ଧୁସ୍ପରଶନ,
ବନ୍ଧୁପ୍ରେମମୟ ବାଣୀ କୂଜନେ ଦିଏ ଜୀବନ । ୩୦

ବନ୍ଧୁ ଘ୍ରାଣ ପ୍ରସାଦରୁ କୁସୁମ ବାସ ପ୍ରାପତ,
ପ୍ରକୃତି କି କରିପାରେ ମୋ ମନ ପ୍ରକୃତିଗତ ? ୩୧

ମୋ ମନ ମୋଠାରେ ଏବେ ନାହିଁ ଅଗୋ ସହଚରି !
ପ୍ରାଣଧନ ସହିତରେ ସେ ଅଛି ତ ଗତି କରି । ୩୨

ମୋର କର ଧର ସଖି ! ଫେରି ମୁଁ ଯିବି ସଦନେ,
କି ଫଳ ବିଳମ୍ବ କରି ଏ ଭୀଷଣ ବୃନ୍ଦାବନେ ? ୩୩

ଚାଲ ଗୋ ସଦନେ ଯିବା ଅବଶ ମୋର ଶରୀର,
ମୋର କର ଧରି ସଖି ! କରି ଗତି ଧୀର ଧୀର । ୩୪

ଶ୍ରୀମତୀକି ଘେନି ଗଲେ ସଦନକୁ ସଖୀଗଣ,
ସୁମନ ! ମନରେ ଚିନ୍ତ ଶ୍ରୀଚିନ୍ତାମଣି ଚରଣ । ୩୫



# ଦ୍ୱାଦଶ ଛାନ୍ଦ

ରାଗ—ଶଙ୍କରାଭରଣ *

## ବ୍ରଜାଙ୍ଗନାମାନଙ୍କର ବିରହ

ବିରହକାତର ବ୍ରଜଯୁବତୀନିକର,
ଭ୍ରମନ୍ତି ବୃନ୍ଦାବନରେ ହୋଇ ବାର ବାର,
ମ୍ଳାନ ଭୂଷଣ ବସନ,
ରାହୁଗ୍ରସ୍ତ ଶଶୀ ସମ ସୁଧାଂଶୁବଦନ । ୧
କାହିଁ ଯାଉ କେଉଁ ପଥେ ନ ପାରନ୍ତି ଜାଣି,
ଗମନ କରନ୍ତି ଯଥା ଗଜେ ବାତୁଳାଣୀ,
ପଶି ଏ କୁଞ୍ଜେ ସେ କୁଞ୍ଜେ,
ହୋଇଣ ଅଧୀର ଖୋଜୁଛନ୍ତି ବ୍ରଜରାଜେ । ୨
ନୟନରୁ ବହେ ବାରି ଅଙ୍ଗୁ ସ୍ୱେଦ ଗଳେ,
ସ୍କନ୍ଧରୁ ଅଞ୍ଚଳ ଖସି ଲୋଟେ ମହୀତଳେ,
ପାଦ-କ୍ଷତରୁ ଶୋଣିତ,
ବହି କୋମଳ-ଚରଣ କରଇ ରଞ୍ଜିତ । ୩
ଶୁଷ୍କ କଣ୍ଠ ଶୁଷ୍କ ତାଳୁ ରସନା ଅଧର,
ଜଡ଼େ ଏଣେ ତେଣେ ମୁକ୍ତକେଶ ଥରଥର,
ଲାଗି କଣ୍ଟକେ ବସନ,
ରଷା ବନା ଥରଥର ହୁଏ ଛିନ୍ନଭିନ୍ନ । ୪
କେ ତୃଷା ନିବାରେ ପଶି ଯମୁନାର ଜଳେ,
କେହୁ ବାମା ଫୁଟି ବସେ କଦମ୍ବର ତଳେ,
କେହୁ ବସନ-ଅଞ୍ଚଳ,
ସ୍ୱେଦ ବିନାଶନେ କରେ କରଇ ଚଞ୍ଚଳ । ୫

---

* ବୈଦେହୀଶ ବିଳାସ “ବାଳ ବାଳବାରେ ଯାହୁ ଲକ୍ଷ୍ମଣ ଖେଦ” ରାଗେ

ଚାହିଁଛନ୍ତି ଏଣେ ତେଣେ ନିସ୍ପଟେ ନିରେଖି,
ଭାଳୁଛନ୍ତି ଶ୍ୟାମ ବୋଲି ଦୂରୁଁ ଗୁଳ୍ମ ଦେଖି,
ଯେଣେ ଚଳନ୍ତି ନୟନ,
'ନବଘନ ରୂପ ତେଣେ କରନ୍ତି ଦର୍ଶନ । ୬

ତମାଳମାଳକୁ ଚାହିଁ କେହି ବ୍ରଜବାଳୀ,
କହଇ, "ତମାଳପ୍ରିୟ ଆମ୍ଭ ବନମାଳୀ,
ଚାଲ ଖୋଜିବା ଗୋ ତହିଁ,
ପଲ୍ଲବ-ଗହଳ ମଧ୍ୟେ ଥିବେ ବନ୍ଧୁ ରହି ।" ୭

କେହି କହେ, "କରିଛନ୍ତି ଚୌର ଆମ୍ଭ ଚିତ୍ତ,
ଲୁଚିଥିବେ ତମାଳବନରେ ସେ ଗୋ ମିତ !
ଆସ ଯିବା ଗୋ ସତ୍ୱରେ,
ସକଳେ ବେଢ଼ି ଧରିବା ଆମ୍ଭ ଚିତ୍ତଚୌରେ ।" ୮

କେ କହେ, "ଅତି ହଟିଆ ଆମ୍ଭ ବ୍ରଜନଟ,
ନ ଜାଣ କି ସଖି ! ସେ ଗୋ କଳେ ଯେତେ ହଟ,
ଅଜି କରନ୍ତି ବା ତାହି,
ହଟିଆ କହ୍ନାଇଁ ବଡ଼ କପଟୀ ଅଟଇ ।" ୯

ଦୂରେ ପିକବାଣୀ ଶୁଣି କେ ବ୍ରଜସୁନ୍ଦରୀ,
ଚମକିଣ କହେ, "ଶୁଣ ଶୁଣ ସହଚରି !
ତେଣେ ବାଜଇ ମୁରଲୀ,
ଆସ ଆସ ବହନ ଗୋ ଯିବା ତହିଁ ଚଳି ।" ୧୦

କେ କହେ, "ଏ ହୋଇଥିଲେ ଶ୍ୟାମର ମୁରଲୀ,
ଡାକୁଥାନ୍ତା ସୁଧାସ୍ୱରେ ରାଧା ରାଧା ବୋଲି,"
କେହି କହେ, "ଅଗୋ ସଖି !
କାନ୍ଦଛୁ ଶ୍ୟାମ ମୁରଲୀ ଶ୍ୟାମଙ୍କ ନ ଦେଖି ।" ୧୧

କେହୁ ଶ୍ୟାମାବର ଦେଖି କଦମ୍ବେ କୋକିଳ,
କହେ, "ସଜନି ଗୋ ! ଏ ତ ଅଟେ ନନ୍ଦବାଳ,
ସେ ତ ମାୟାବୀଙ୍କ ଗୁରୁ,
କହୁଥା କଥା ପାସୋର ନ ଯାଏ ମନରୁ ।" ୧୨

କେହୁ କହେ, "ସହଚରି ! ଏ ଅଟଇ ପିକ,
ଶ୍ୟାମର ମୁରଲୀ ସଙ୍ଗେ ଦେଉଥିଲା ଡାକ,
ଏ ତ ସ୍ୱାଧୀନ ଖେଚର,
କି ସୁଖେ ରହୁଛି ନ ଯାଇଣ ମଧୁପୁର ?" ୧୩

ପିକେ ଲକ୍ଷ କରି କେହୁ ନିକ୍ଷେପେ ଉପଳ,
କହଇ, "ନ ମର ତୁ ରେ ପ୍ରକାଶୁଛୁ କଳ,
ଛାଡ଼ି ଗଲେ ନନ୍ଦବାଳ,
ଆମ୍ଭ ପରି ସିନା ଅଟେ ମନ୍ଦ ତୋ କପାଳ ।" ୧୪

କେହୁ କହେ, "ସଜନି ଗୋ ! କୋକିଳେ ନ ମାର,
ଆମ୍ଭ ପରି ଦୁଃଖ ଘଟିଅଛି ଭାଗ୍ୟେ ତାର,
ତାକୁ ବରଗିଣ ଗୁରୁ,
ଦେବା ତାର କରେ ଆମ୍ଭ ଦୁଃଖ-ସମାଚାର ।" ୧୫

କେକୀ ନୃତ୍ୟ ଦେଖି କେହୁ ବୋଲଇ ବଚନ,
"ଦେଖ ଗୋ ସଜନି ! ଏ ତ ନନ୍ଦର ନନ୍ଦନ,
ଶିରେ ଚୂଳ କି ସୁନ୍ଦର,
ନାଚୁଛନ୍ତି ପ୍ରେମେ ଦେଖ ଗୋପିନୀନିକର ।" ୧୬

କେହୁ ଗୋପୀ କଳାପୀକି ଧରିବା ମାନସେ,
ଦ୍ରୁତପଦେ ଗମନ କରଇ ପ୍ରେମବଶେ,
ଶିଖୀବର ଗଲେ ଉଡ଼ି,
"ନ କର ହଠ" ଭାଷିଣ ଅସଇ ବାହୁଡ଼ି । ୧୭

କେ ଲତାକୁ ଚାହିଁ ବୋଲେ "ଭୋ ପର ବଲ୍ଲର !
ଥିଲୁଁ ଦିନେ ଭାଗ୍ୟବତୀ ଅମ୍ଭେ ବ୍ରଜନାରୀ,
ଧରି ଅଙ୍ଗେ ସୁମନସ,
ହସୁଥିଲୁଁ ଶ୍ୟାମ ପାଶେ ଗେଲା ଗେଲା ହସ ।" ୧୮

କେ ବୋଲେ, "ଅମ୍ଭଙ୍କୁ ବଳି ଲତା ଭାଗ୍ୟବତୀ,
ପାଦପ ସତତ ତାକୁ ରଖିଅଛି କତି,
ତଳେ ନ କରେ ଅନ୍ତର,
ଶ୍ୟାମ ସମ ଶଠ ତ ନୁହଇ ତରୁବର ।" ୧୯

କେ ବ୍ରଜଲଳନା ଭାଷେ ଦେଖିଣ ଭ୍ରମର,
"କେମନ୍ତ ଅସ୍ଥିର ପ୍ରୀତି ଦେଖ ଗୋ ଭୃଙ୍ଗର,"
ଶୁଣି କହେ କେ ରମ୍ଭୋରୁ,
"ଅଟନ୍ତି ଅମ୍ଭ ବନ୍ଧୁ ଷଟ୍‌ପଦଗୁରୁ ।" ୨୦

କେ ବାଳତମାଳଡାଳ କରପଦ୍ମେ ଧରି,
କହେ ତମାଳକୁ, "ବନ୍ଧୋ ! ନ ଯା ମଧୁପୁରୀ,
ଅଜ ଛାଡ଼ି ତ ନ ଦେବ,
ପଣନ୍ତରେ ଚଣ୍ଡି ଦେଇ ପ୍ରହରୀ ମୁଁ ହେବ ।" ୨୧

କେ ବ୍ରଜରମଣୀ ହାର ଗୁନ୍ଥି ସୁମନସେ,
କଦମ୍ବ କାଣ୍ଡକୁ ଚାହିଁ କହଇ ହରଷେ,
"ବନ୍ଧୋ ! ଘେନ ଉପହାର,
ଅତି ଯତନେ ଅଧୀନ ଗୁନ୍ଥିଛି ଏ ହାର ।" ୨୨

କେହୁ ନବୀନ ପଲ୍ଲବେ ରଚି ଶୟନ,
ସହଚରୀ କର ଧରି ବୋଲଇ ବଚନ,
"ବନ୍ଧୋ ! ଶେଯେ ଅସି ବସ,
ବୁଝିଲଣି ହୋଇଅଛ ଅଜ ନାରୀବେଶ ।" ୨୩

ଖୋଜି ଖୋଜି ଶ୍ୟାମଙ୍କୁ ନ ପାଇ ବୃନ୍ଦାବନେ,
ଫୁଟି ବସିଲେ ସୁନ୍ଦରୀ ଯମୁନା ପୁଳିନେ,
କିବା ପରିହରି ବନ,
ଜାଣିଥେ ସ୍ୱଜନ ବନେ ବନଜ-କାନନ । ୨୪

କେହି ଶ୍ୟାମରୂପ ଦେଖି କଳ୍ପନା-ନୟନେ,
ବେଗ ବେଗ ହୋଇ ପଶେ ଗହନ କାନନେ,
କହେ, "ସଖି ! ଆସ ଆସ,
ବହିଛନ୍ତି ଲତା ଏହି ବନେ ପୀତବାସ ।" ୨୫

କେ କାହାକୁ ପୁଚ୍ଛେ କହ କହ ସହଚରି !
"ଭେଟିଲ କି କୁଞ୍ଜବନେ ନିକୁଞ୍ଜବିହାରୀ ?"
କେ କହେ, "ହେଲୁ ବାଇ,
ସାଗରେ ହଜାଇ ମଣି ପୁଣି କି ତା ପାଇ ?" ୨୬

କେ କହେ, "ନଳିନୀବନ ପାଇଲେ ଭ୍ରମର,
ପଲାଶବନେ କି ରହେ ତାର ସମାଦର ?
କଂସ ନଗର ରମଣୀ,
ପରମରସିକା ପୁଣି ନାଗରଙ୍କ ମଣି ।" ୨୭

କେ କହେ, "କିପାଇଁ ଥିବ ଏହି ବୃନ୍ଦାବନ ?
ଯଦି ଫେରି ନ ଆସିଲେ ବ୍ରଜେ ପ୍ରାଣଧନ,
ଗୁଳି ହୋଇ ଏକ ଏକ,
ଦହିବା ଅନଳେ କାଠି କଦମ୍ବ ଯେତେକ । ୨୮

କୁହୁ କୁହୁ କରି ଡାକେ ହଟିଆ କୋକିଳ,
ବଧିବା ତାହାର ପ୍ରାଣ ଅଣାଇ ବେଢ଼ଳ,
ନାଣି ଯମୁନା ସଲିଳ,
ଅଗ୍ନି ଯୋଗେ ମରାଇବା ବାସନ୍ତ ଅନିଳ । ୨୯

ଅନଳେ କୁସୁମବନ ଦେବା ଚାଲ ଜାଳି,
ସହିତେ ମରିବ ପୋଡ଼ି ତହିଁ ପୋଡ଼ା ଅଙ୍ଗ,
ନାହିଁ ବିଷାଦ କି ଗୋପେ ?
କହ କଳାପୀ ରହିବୁ ଜୀବନେ କିରୂପେ ?" ୩୦

ବିଷାଦ-ମଳିନ-ମୁଖ ବ୍ରଜସୁତେ ଦେଖି,
ବିନ୍ୟସ୍ତ କର ପୃଷ୍ଠରେ କେହି ଶଶିମୁଖୀ,
"ତୁମ୍ଭ ରଖୁଥିଲ ସ୍ନେହେ,
ଦେଖିଛ କି ରଖୁଥିଲେ ! ଆଜି ଏ ବିରହେ ?" ୩୧

କେହି କହେ, "ଦେଖ ସଖି ! କେମନ୍ତ କଲ୍ଲୋଳେ,
ବେଗ ବେଗ ହୋଇ ଏ ଯମୁନା ନଦୀ ଚଳେ,
ବନ୍ଧୁ ଦରଶନ ଆଶେ,
ଚାଲ ଗୋ ବହନ ଅମ୍ଭେ ଯିବା କଂସଦେଶେ ।" ୩୨

ଏମନ୍ତେ ଦିବସ ହେଲା ତୃତୀୟ ପ୍ରହର,
କୋମଳରେ ଚନ୍ଦ୍ରାବଳୀ ପ୍ରକାଶିଲା ଗିର,
ନେତ୍ରୁଁ ଅଶ୍ରୁ ଝରଝର,
ବହି ଭିଜନ୍ତେ ବାସ, ଭିଜନ୍ତେ ପୀନ ପୟୋଧର । ୩୩

"ବନ୍ଧୁ ବିନା କି ଫଳ ଗୋ ବୃନ୍ଦାବନେ ରହି,
ଉଠ ଚାଲ ସଦନକୁ ଯିବା ପ୍ରାଣସହି !
ଗୃହେ ଆସିଥିବେ ବନ୍ଧୁ,
ହେବା ସୁଖୀ ତହିଁ ଦେଖି ତାଙ୍କ ମୁଖ-ଇନ୍ଦୁ ।" ୩୪

ବିଷାଦେ ଗୃହକୁ ଧୀରେ ଚଳିଲେ ଗୋପିନୀ,
ଚଳିଲ କିବା ଅବଳା ଲାବଣ୍ୟ ତଟିନୀ,
ଚନ୍ଦ୍ରା-ମିଥୁନାଦ୍ୟକାଳେ,
ମିଳିବାକୁ ପ୍ରେମ-ସିନ୍ଧୁ ଆନନ୍ଦ-କଲ୍ଲୋଳେ । ୩୫

ଯାଉଁ ଯାଉଁ ପଥରେ କହିଲେ ଗୋପ ବାଳୀ,
"ଚାଲ ପୂଜିବା ଯମୁନାତଟେ ବନମାଳୀ,
କି ଭାବିବା ଗୃହେ ଯାଇ,
ମନେ ସ୍ନେହ ଥିଲେ ପାଶେ ଆସିବେ କହ୍ନାଇ ।" ୩୬

ହେଉ ହେଉ କହି ଗୋପୀ ହୋଇଲେ ସମ୍ମତ,
ଯମୁନା ପୁଳିନେ ସର୍ବେ ହେଲେ ଉପଗତ,
ଶ୍ୟାମ ପ୍ରତିରୂପ ଫୁଲେ,
ବ୍ରଜବଧୂମାନେ ଅତି ଯତ୍ନେ ଗଢ଼ିଲେ । ୩୭

ନାନା ନବପଲ୍ଲବରେ ରଚିଣ ଆସନ,
ନୀପମୂଳେ ପ୍ରତିମୂର୍ତ୍ତି କଲେକ ସ୍ଥାପନ,
କରି ସର୍ବେ ନମସ୍କାର,
ବୋଇଲେ, "ଗୋପୀଙ୍କି ଦୟା ନାହିଁ କି ତୁମ୍ଭର ?"୩୮

କେ ଗୋପୀ ଗଳାରେ ଦେଇ ସୁମନସଦାମ,
ବୋଇଲା, "କିପାଇଁ ବନ୍ଧୋ ! ହେଲ ମୋତେ ବାମ,
ଏହି ମାତ୍ର ଭିକ୍ଷା ମୋର,
ଦାସୀ ଦୋଷୀ ହୋଇଲେହେଁ ନ କରିବ ଦୂର ।"୩୯

କେ ଗୋପୀ ପଲ୍ଲବ-ପାତ୍ରେ ଆଣି ସ୍ୱଚ୍ଛନୀର,
ଆନନ୍ଦରେ ଧୋଇ ପ୍ରତିମୂରତି ପୟର,
କହେ "ଦୂର କଂସଦେଶ,
ବନ୍ଧୁ ହେ ! କୋମଳପାଦେ ହୋଇଥିବ ତ୍ରାସ ।"୪୦

କେ ମଧୁର ପକ୍ୱଫଳ ବନରୁ ଆହାରି,
ପତ୍ର-ପାତ୍ରେ ରଖି କହେ, "ଭୁଞ୍ଜ ବଂଶୀଧାରି !
ଅତି ଏ ଫଳ ମଧୁର,
ଚାଲ ଗୃହେ ଦେବ ଯେତେ ଅଛି ଦଧି ସର ।"୪୧

କେ କହେ, "ଗଲେ କି ସବୁ ମଧୁପୁର ମଧୁ ?
ତେଣୁ ବୃନ୍ଦାବନେ ପୁଣି ଅସିଅଛୁ ବନ୍ଧୁ !
ଅତି କ୍ଷଣ-ସ୍ଥିରତଅ,
ଅଟନ୍ତି ଏ ଜଗତରେ ଯେତେକ କାଳିଆ ।" ୪୨

କେହୁ କହେ, "ଗୃହବନ୍ଧନ କରିଥିଲ କଷ୍ଟ,
କିପାଇଁ ନଇଲ ଏତେକାଳ ଗୋପନାଥ !
ହୋଇଲ କି ବାଟବଣା ?
ତୁମ୍ଭର ଶରଧା ବଢୋ ! ଏବେ ଗଲା ଜଣା ।" ୪୩

କେ ବୋଇଲା, "ତେମନ୍ତ ନୁହଇ ପ୍ରାଣସଖୁ !
ପ୍ରେମାଜୀର୍ଣ୍ଣ-ରୋଗେ ଗ୍ରସ୍ତ ହୋଇଥିଲେ ସେହୁ,
କରି ଅତି ପ୍ରୀତି ଭୋଗ,
ତାଙ୍କୁ ଚଳେ ନାଶିବାକୁ ଉପବାସେ ରୋଗ ।" ୪୪

କେ କହିଲା, "ଅତି ପାନ କରି ପ୍ରୀତି-ମଧୁ,
ଅରୁଚି ହେବାରୁ ଗଲେ ତେଜି ବ୍ରଜବଧୂ,
ଏବେ ଅରୁଚି ଘୁଞ୍ଚିଛି,
ମଧୁପୁରେ ତନ୍ତ୍ରିଡ଼ ବଟପୀ ବହୁ ଅଛି ।" ୪୫

କେ କହିଲା, "ସଙ୍ଗାତ ! ହେଲ କି ଜ୍ଞାନହୀନା ?
ଏ ନୁହନ୍ତି ଶ୍ୟାମ ତାଙ୍କ ପ୍ରତିରୂପ ବିନା,
ହେବାଯାଏ ତାଙ୍କ ଭେଟ,
ପୂଜିବା ଏ ମୂର୍ତ୍ତି ଯହୁଁ ରାଜେ ବଂଶୀବଟ ।" ୪୬

ଶ୍ୟାମ ପ୍ରତିମୂର୍ତ୍ତି ଶିରେ ନେଲା ଚନ୍ଦ୍ରାବଳୀ,
ସଜଳନୟନା ଗୋପୀ ଦେଲେ ହୁଳହୁଳି,
ମୂର୍ତ୍ତି ବଂଶୀବଟେ ରଖି,
କାନ୍ଦି କାନ୍ଦି ସଦନକୁ ଗଲେ ଚନ୍ଦ୍ରମୁଖୀ । ୪୭

ବୁଧଜନେ ନ ଭେନ ହେ ରଚନାର ଦୋଷ,
ତ୍ୟାଜ୍ୟ କି ଅଟଇ ମନ୍ଦପାତ୍ରସ୍ଥ ପୀୟୂଷ ?
କୃଷ୍ଣଲୀଳା ସୁଧାରସ,
ପିଅ ହୃର ଚିନ୍ତାମଣି ଚରଣ-ସାରସ । ୪୮



## ତ୍ରୟୋଦଶ ଛାନ୍ଦ

ଗଡ଼ମାଳ ବୃତ୍ତ *

### ଯଶୋଦା ଓ ଗୋପବାଳକମାନଙ୍କର ଶୋକ

ପ୍ରଭାତେ ବ୍ରଜକୁମାରେ, ପ୍ରବେଶିଣ ନନ୍ଦଭୂପାଳ ଦ୍ୱାରେ ଯେ,
ମୃଦୁସ୍ୱରେ ଡାକିଲେ ବାହାରେ, ସୁଜନ ହେ । ୧
"ଉଠ ଉଠ ଗୋ ଜନନି ! ପ୍ରଭାତ ପର ହେଲାଣି ରଜନୀ ଗୋ,
ଦିଅ ଭୁଞ୍ଜିବୁଁ ସର ନବଣୀ, ଜନନି ଗୋ ! ୨
ବେଗେ ବାନ୍ଧି ଦିଅ ଚୂଳ, ଅଟେ ଅତିଦୂର ଯମୁନାକୂଳ ଗୋ,
ବଚ୍ଛା ହେଲେଣି କ୍ଷୁଧା-ଆକୁଳ, ଜନନି ଗୋ !" ୩
ବ୍ରଜକୁମାରଙ୍କ ବାଣୀ, ଚମକି ଶୁଣିଲେ ବରଜରାଣୀ ଯେ ,
ବେଗେ ଉଠିଲେ ତେଜି ଧରଣୀ, ସୁଜନ ହେ । ୪
ଦ୍ୱାର କରି ଉଦ୍‌ଘାଟନ, କହିଲେ, "ଆସ ମୋ ଅଞ୍ଚଳ-ଧନ ରେ !
ଦେଖା ତୋ ଚନ୍ଦ୍ରମା-ଶଶୀ-ବଦନ, ମୋ କାହ୍ନୁରେ । ୫
କାହ୍ନୁକି ରେ ଏତେ ଦିନେ, ତୋ ଦୁଃଖିନୀ ମାତା ପଡ଼ିଲା ମନେ ରେ,
ଭଲେ ଥିଲୁ ତ କଂସଭୁବନେ, ମୋ କାହ୍ନୁରେ । ୬
ଅସି ଦେଖ ରେ ଗୋବିନ୍ଦ ! କାନ୍ଦି କାନ୍ଦି ନନ୍ଦ ହେଲେଣି ଅନ୍ଧ ରେ,
ନ ଦେଖିଣ ତୋ ମୁଖାରବିନ୍ଦ, ଗୋବିନ୍ଦ ରେ ! ୭

---

* ବନ୍ଦସୁଚିନ୍ତାମଣି "ସ୍ୱଧା ଧର ଦୂତି କର" ସ୍ୱରେ

ସଜ୍ଜ ଅଛି ଦଧିଭାଣ୍ଡ, ଦେଖୁଅଛି ମୁଁ ଏବେ ମନ୍ଥନଦଣ୍ଡ ରେ,
ମୋତେ ସ୍ୱପ୍ନ ଏବେ ଗୋପଦାଣ୍ଡ, ମୋ କାହ୍ନୁ ରେ ! ୮
କୋଳେ ଆସି ବାପ ଧନ ! ମୋ ନେତ୍ର-ପଟଳ କର ମୋଚନ ରେ,
ଆସ ତୋ ମୁଖେ ଦେବି ଚୁମ୍ବନ, ମୋ କାହ୍ନୁ ରେ ! ୯
ଆସ ମୋ ମୁରଲୀପାଣି, ଦଧି ମନ୍ଥି ଭୁଞ୍ଜାଇବି ନବଣୀ ରେ,
ତୋର ସୁଧା ବାଣୀ ଶୁଣି ଶୁଣି, ମୋ କାହ୍ନୁ ରେ ! ୧୦
ଯେ ଦିନୁ ଯାଇଛୁ ଛାଡ଼ି, ଶୂନ୍ୟ ସଦନେ ମୁଁ ରହୁଛି ପଡ଼ି ରେ,
ଯେହ୍ନେ ଅନ୍ଧ ହରାଇ ଲଉଡ଼ି, ମୋ କାହ୍ନୁ ରେ ! ୧୧
ଆସ ରେ ମୋ ବଳରାମ, ନ ଦେଖି ତୋ ମୁଖ ମୋ ଦୁଃଖ ବାମ ରେ,
ମୋତେ କୋଟିଯୁଗ ଏବେ ଯାମ, ମୋ ରାମ ରେ ! ୧୨
ଶୁଣି ଯଶୋଦା ବଚନ, କାନ୍ଦଣା କହିଲେ ବାଳକଗଣ ଯେ,
"ଆସି ନାହାନ୍ତି ବ୍ରଜରଞ୍ଜନ, ଯଶୋଦେ ଗୋ ! ୧୩
ଯିବାବେଳେ କଂସଧାମ, ଦେଇଗଲେ ଆଜ୍ଞା ନୀରଦ-ଶ୍ୟାମ ଗୋ,
ତାଙ୍କ ବଦଳେ ଦାମ ସୁଦାମ, ଯଶୋଦେ ଗୋ ! ୧୪
ପ୍ରତ୍ୟହ ତୁମ୍ଭ ସଦନେ, ଆସିବା ନିୟମେ ନିଶାବସାନେ ଗୋ,
ଧେନୁ ଯିବାକୁ ବାଛୁର ବନେ, ଯଶୋଦେ ଗୋ ! ୧୫
ଅମ୍ଭେ ପାଳି ଶ୍ୟାମ ବାଣୀ, ତୁମ୍ଭ ସଦନକୁ ଆସିଛୁଁ ରାଣୀ ଗୋ !
ଯିବୁଁ ବନକୁ ଦିଅ ମେଲାଣି, ଯଶୋଦେ ଗୋ ! ୧୬
ଶୁଣି ତାହାଙ୍କ ବଚନ, ଭାଙ୍ଗିଲା ଯଶୋଦା ସୁଖ-ସ୍ୱପନ ଯେ,
ଧୀରେ କହିଲେ ପୋଛି ନୟନ, ସୁଜନ ହେ ! ୧୭
"ଆସ ରେ ବ୍ରଜନନ୍ଦନ ! ମୋ ନୀଳମଣିର ବନ୍ଧୁଚନ୍ଦନ ରେ,
ଦେବି ନବଣୀ କର ଭୋଜନ, ବାଳକେ ହେ ! ୧୮
ଯଥେଚ୍ଛା ନବଣୀ ଖାଇ, ଆଜି ଗୋକୁଳରୁ ମଥୁରା ଯାଇ ରେ,
ଧେନୁ ଆସ ମୋ ପ୍ରାଣକହ୍ନାଇ, ବାଳଟେ ହେ ! ୧୯

ଅସିଲେ ମୋର ଦୁଲାଳ, ତାହା ସଙ୍ଗେ ଖେଳି କାଟିବ କାଳ ରେ;
ତାକୁ ପିନ୍ଧାଇବ ବନମାଳ, ବାଳକେ ହେ ! ୨୦
ଦାରୁଣ କଂସ ସଦନେ, ନିଗ୍ରହସ୍ଥ ହୋଇ ମୋର ନନ୍ଦନେ ହେ,
ଥିବେ ଅଲୋଡ଼ା ଦ୍ରବ୍ୟ ପେସନେ, ବାଳକେ ହେ ! ୨୧
କିଏ ଜାଣି ତାଙ୍କ ମନ, ଦେଉଥିବ ତାଙ୍କୁ ପାନ ଭୋଜନ ହେ,
ଅବା କରୁଥିବେ ସେ ରୋଦନ, ବାଳକେ ହେ ! ୨୨
କର କାହାକୁ ଜଞ୍ଜାଳ, ମୋ ଶଣ୍ଢୋଳ କାହ୍ନୁ ମୋ କାମପାଳ ହେ,
ମାଗୁଥିବେ ସର ବେଳ ବେଳ, ବାଳକେ ହେ ! ୨୩
କହନ୍ତି ଗୋପ-ନନ୍ଦନେ, "ନ ହୁଅ କାତର ଅଧୀର ମନେ ଗୋ,
ଦେଖ ଅସିବେଁ ବଂଶୀବଦନେ, ଯଶୋଦେ ଗୋ !" ୨୪
ଦଧି ମନ୍ଥି ବେଗ କରି, ନବଣୀ ଯଶୋଦା ଦେଲେ ବଣ୍ଟି ଯେ,
ନେଲେ ବାଳେ କର ପାତ କରି, ସୁଜନ ହେ ! ୨୫
ବାଳକଙ୍କୁ ନନ୍ଦନାରୀ, କହିଲେ, "ସତ୍ୱର ଭୋଜନ ସାରି ହେ,
ନାଚ ମୋ ଆଗେ କେଶବ ପରି, ବାଳକେ ହେ !" ୨୬
ନବଣୀ କରି ଭୋଜନ, ନାନା ତାନେ କରି ମୁରଲୀସ୍ୱନ ଯେ,
କଲେ ବାଳେ ନୃତ୍ୟ ବିରଚନ, ସୁଜନେ ହେ ! ୨୭
ଧେନୁ ସଙ୍ଗେ ବତ୍ସଗଣ, ବିଷାଦେ ବିରଜ ବାଳକଗଣ ଯେ,
ବୃନ୍ଦାବନେ କଲେ ବିଚରଣ, ସୁଜନେ ହେ ! ୨୮
କେ କହେ, "ନାହାନ୍ତି ଶ୍ୟାମ," ଶୂନ୍ୟ ଲାଗୁଛି ଏ ବିପିନଧାମ ହେ,
ବୃନ୍ଦାବନ-ଶୋଭା ସମ ଶ୍ୟାମ, ସୁହୃଦେ ହେ ! ୨୯
ପାଷାଣ-ହୃଦୟ ଧରି, ତେଜିଲେ ଅମ୍ଭଙ୍କୁ ମୁରଲୀଧାରୀ ହେ,
କରି ଗଲେ ମଥୁରାକୁ ଝୁରି, ସୁହୃଦେ ହେ ! ୩୦
କିଏ ଅନ୍ନ ଭିକ୍ଷା କରି, ବିନାଶିବ କ୍ଷୁଧାନଳ ଅମ୍ଭରି ହେ,
ତୃଷା ନାଶିବ ଦେଇଣ ବାରି, ସୁହୃଦେ ହେ ! ୩୧
କେ ନାଶି ଧେନୁକାସୁର, କଂସ ତାଳବନ କରିବ ଜୁର ହେ,
ଦେବ ଅମ୍ଭଙ୍କୁ ଫଳ ମଧୁର, ସୁହୃଦେ ହେ ! ୩୨

କା ଲାଗି କରି ଯତନ, ଆଣିବା ପେଷ୍ଟକ ଅନ୍ନ ବ୍ୟଞ୍ଜନ ହେ,
କାହା ସଙ୍ଗେ କରିବା ଭୋଜନ, ସୁହୃଦେ ହେ ! ୩୩
କାହା ସଙ୍ଗେ ବନେ ଖେଳି, ଚରଚିବା ବନେ ଭୋଜନ କେଳି ହେ,
ହେବା ଛିଅଖୋଇ ସୁଖେ ମିଳି, ସୁହୃଦେ ହେ ! ୩୪
ବନ୍ୟ କୁସୁମ ଆହରି, କାହାକୁ କୁସୁମେ ମଣ୍ଡିତ କରି ହେ,
ସୁଖେ ନାଚିବା କା କର ଧରି, ସୁହୃଦେ ହେ ! ୩୫
କା ସଙ୍ଗେ ହ୍ରଦେ ସନ୍ତରି, ଆଣିବା କମଳ ଚୟନ କରି ହେ,
ବ୍ରଜେ ଭ୍ରମିବା ପଦ୍ମ ଶେଖର, ସୁହୃଦେ ହେ ! ୩୬
ଛାଡ଼ି ଗଲେ ବନମାଳୀ, କାହା ସଙ୍ଗେ ନୀପବନରେ ମେଳି ହେ,
ଏବେ ପଞ୍ଚାଇ ହୋଇବା ଦୋଳି, ସୁହୃଦେ ହେ ! ୩୭
ଥାନ୍ତା କି ସେ ଅଜଗର, ନାଶିଲେ ଯାହାକୁ ମୁରଲୀଧର ହେ,
ନାଶ କରନ୍ତା ଦୁଃଖୀ ଆମ୍ଭର, ସୁହୃଦେ ହେ ! ୩୮
ପକ୍ୱଫଳ ଚୁଣି ଚୁଣି, ଭୁଞ୍ଜିବାକୁ ଦେବା କାହାକୁ ଡାକି ହେ,
କାହା ସଙ୍ଗରେ ରହିବା ଲୁଚି, ସୁହୃଦେ ହେ ! ୩୯
କେତେ ସଙ୍କଟ-ବଦନେ, ପଡ଼ିଲୁଁ କାହ୍ନୁ ରଖିଲେ ଜୀବନେ ହେ,
ଅଜ୍ଞ ବନ୍ଦାଇବାକୁ ଏ ବନେ, ସୁହୃଦେ ହେ !" ୪୦
କେ କହେ, "ଗୋଟିଏ ବକ, ଆସୁଁ ବଦନେ ଗ୍ରାସେ ବ୍ରଜବାଳକ ହେ,
ହେଲେ ଘନଶ୍ୟାମ ତା ଅନ୍ତକ, ସୁହୃଦେ ହେ ! ୯୧
ନାହିଁ କି ମନେ କାହାର, ରଖିଲେ ଆମ୍ଭଙ୍କୁ ମୁରଲୀଧାରୀ ହେ,
ଷଣ୍ଢ ଅଘ କେଶୀଙ୍କ ସଂହାରି, ସୁହୃଦେ ହେ !" ୪୨
କେହି କହେ, "ଗୃହେ ଯିବା, ଶୂନ୍ୟ ବୃନ୍ଦାବନେ କପାଇଁ ଥିବା ହେ ?
କଂସ ଧାମେ ଶ୍ୟାମକୁ ଦେଖିବା, ସୁହୃଦେ ହେ!" ୪୩
କେ ବସି କଦମ୍ବ ଡାଳେ, କେହୁ ବସି ଅବା ତମାଳ ମାଳେ ଯେ,
ଶୋକେ ବୁଡ଼ିଲେ ବରଜବାଳେ, ସୁଜନେ ହେ ! ୪୪
ଜନ୍ମବନ୍ଧହୀନ ମନେ, ବତ୍ସା ଧେନୁ ସଙ୍ଗେ ଗଲେ ସଦନେ ଯେ,
ଦିବା ଶେଷରେ ଗୋପନନ୍ଦନେ, ସୁଜନେ ହେ ! ୪୫

ଏହୃରୂପେ ବ୍ରଜବାଳ, ପ୍ରତ୍ୟହ ବନରେ କାଟିଲେ କାଳ ଯେ,
ସଦା ସୁମର ନନ୍ଦଦୁଲାଳ, ସୁଜନେ ହେ ! ୪୬
ଅନନ୍ଦରେ ବୁଧଗଣ ! କେଶବ ଚରିତ କର ଶ୍ରବଣ ହେ,
ସ୍ମର ଶ୍ରୀ ଚିନ୍ତାମଣି ଚରଣ, ସୁଜନେ ହେ ! ୪୭



## ଚତୁର୍ଦ୍ଦଶ ଛାନ୍ଦ

### ପୂରବୀ ବୃତ୍ତ

## ଯଶୋଦାର ଶୋକ

ଶ୍ୟାମ ବିରହରେ ଉନ୍ମତ୍ତ ହୋଇ ବ୍ରଜବାସୀ,
ଭମିର ପ୍ରବେଶ ଦେଖି ନନ୍ଦଙ୍କୁ କହିଲେ ବାଣୀ । ୧
"ଗୋଧନ ବାହୁଡ଼ା ବେଳ ଗଡ଼ିଲାଣି ହେ ଭୂପାଳ !
କିପାଇଁ ନ ଅସେ ଫେରି ବନରୁ ମୋର ଦୁଲାଳ ? ୨
ଅଜି ପ୍ରଭାତରେ ବଚ୍ଛା ଧେନୁ ଗୋପବାଳ ସଙ୍ଗେ,
ଗଲା ବନେ ବନମାଳୀ ବେଣୁତାନେ ନାଚି ରଙ୍ଗେ । ୩
ଭମିବ ଗ୍ରାସେ ଗହଳ-ଶ୍ୟାମଳ-ତମାଳବନ,
ପଥ ଭୁଲି ବିପଥେ ବା ଭ୍ରମଇ ମୋ ନବଘନ । ୪
ଭୟ ପାଇ କାନ୍ଦୁଥିବ ବନେ ମୋର ପୀତବାସ,
ଧରୁଛି ଚରଣ ନନ୍ଦ ! ତାକୁ ଖୋଜ ଧେନୁ ଅସ । ୫
ଦଧି ଚୋରି କରିବାରୁ ଗୋପୀ ବା ଅଛନ୍ତି ବାନ୍ଧି,
ମାଗୁଥିବ ମୁକତି ସେ ବିନୟରେ କାନ୍ଦି କାନ୍ଦି । ୬
ବାନ୍ଧନ୍ତି କଠିନା ଗୋପୀ ତା କୋମଳ କର ଜାନୁ,
ଯାତନା ନ ସହି ପାରି କେତେ କାନ୍ଦେ ମୋର କାହ୍ନୁ । ୭
ମଧୁର ଅସର ସର କ୍ଷୀର ଅଛି ଘରେ ମୋର,
କିପାଁ ସେ ଗୋପଙ୍କଠାରେ ହୁଏ ଖଟା-ଦଧିଚୋର ?" ୮

କହେ ନନ୍ଦ, "କିପାଁ ରାଣି ! ବୋଲୁଛ ମୋତେ ଭୂପାଳ ?
ଗଲା ମୋ ରାଜସମ୍ପଦ ଭାଙ୍ଗି ଦେଇ ମୋ କପାଳ । ୯
କିଛି ମୁଁ ନ ପାରେଁ ଅଉ ନାହିଁ ଜ୍ୟୋତି ମୋ ନୟନେ,
କେମନ୍ତେ ମୁଁ ଭ୍ରମିବି ଗୋ ! ତମୋମୟ ବୃନ୍ଦାବନେ ?" ୧୦
ଯଶୋଦା ନନ୍ଦର ବାଣୀ ଶୁଣି ସଦନୁ ବାହାରି,
ଭ୍ରମିଲେ ଗୋପ ଦାଣ୍ଡରେ, 'କାହିଁ ମୋ କାହ୍ନୁ' ପଚାରି ।୧୧
ଏଣେ ତେଣେ ଗୋପପୁରେ ଉଠିଲା ଉଚ୍ଚେ ସଞ୍ଚାର,
ଡାକନ୍ତି ସେ ଉଚ୍ଚସ୍ୱରେ କାହ୍ନୁ କାହ୍ନୁ କାହ୍ନୁ ବାର । ୧୨
ଦେଖି ରାଣୀ ବଚ୍ଛାସହ ବରଜ-ନନ୍ଦନଗଣ,
ଧାଇଁଲେ ସେ ଉଚ୍ଚେ ଡାକି, "ଆସ ରେ ମୋ ନବଘନ !"୧୩
କହିଲେ, "ବିଳମ୍ବ ଏତେ କିପାଁ କହ ନେଇମଣି !
ଆସ ବେଗେ ଭାଇ ଭୁଞ୍ଜ ଅଣିଛୁ ସର ନବଣୀ ।" ୧୪
କହିଲେ ବ୍ରଜବାଳକେ ଯଶୋଦାର ମୁଖ ଚାହିଁ,
"ମଧୁପୁରରୁ ତ ଫେରି ଆସି ନାହାନ୍ତି କହ୍ନାଇଁ ।" ୧୫
କାନ୍ଦି କାନ୍ଦି ନନ୍ଦରାଣୀ କହିଲେ, "ରେ ନବଘନ !
ନ କହ କପଟ ବାଣୀ କର ନବଣୀ ଭୋଜନ ।"୧୬
ବ୍ରଜବାଳକ ସଙ୍ଗରେ ଯଶୋଦା ଫେରିଲେ ବାସେ,
ତାଙ୍କ ସମାଦରେ କେବେ କାନ୍ଦି କେବେ ଅଛିହାସେ । ୧୭
ଯଶୋଦାଙ୍କୁ ଗୃହେ ରଖି ଗଲେ ବ୍ରଜ-ବାଳଗଣ,
ଶ୍ରୀ ଚିନ୍ତାମଣି ଚରଣ ବୁଧେ ! ଚିନ୍ତ ଅନୁକ୍ଷଣ । ୧୮



## ପଞ୍ଚଦଶ ଛାନ୍ଦ

ରାଗ—କେଦାର ଚକ୍ରକେଳି ବୃତ୍ତ *

## ସଖୀମାନଙ୍କର ରାଧାଜୀବନ ରକ୍ଷାର୍ଥ ଉପାୟ ଚିନ୍ତା

ଦୂତୀ ଶ୍ରୀମତୀ ଦୁର୍ଗତି ଦେଖିଣ । କହେ ସମୀପେ ତାଙ୍କ ସଖୀଗଣ ॥
"ମୋର ମନରେ ହେଉଛି ବିଶ୍ୱାସ । ଶ୍ୟାମ ବିରହେ ରାଧା ଯିବ ନାଶ ॥
ଦିନୁ ଦିନୁ ତା କାନ୍ତି ହେମମୟ । ଘନ ପାଣ୍ଡୁରତା କରେ ଆଶ୍ରୟ ॥
କାନ୍ଦେ ସଦା କର ମାରି କପାଳେ । ଦେହ ହୁଏ ପରିଣତ କଙ୍କାଳେ ॥
ଅଶ୍ରୁ ନୟନୁ ନ ଝରଏ ନୀର । ରହେ ଶୂନ୍ୟରେ ଦୃଷ୍ଟି କରି ସ୍ଥିର ॥
କ୍ଷଣେ ଶୀତରେ କମ୍ପେ ତା ଶରୀର । କ୍ଷଣେ ଉତ୍ତାପେ ହୁଅଇ ଅଧୀର ॥
କ୍ଷଣେ ନ ଶୁଣେ ଯଥା ସେ ବଧିର । କ୍ଷଣେ ଭାଷଇ କ୍ଷିପ୍ତ ପରି ଗିର ॥
ବିଷ ମଣଇ ଅଶନ ବସନ । ଶେଯ ତେଜି କରେ ଧରଣୀଶୟନ ॥
କ୍ଷଣ କ୍ଷଣ ସେ କରଇ ବିଳାପ । କ୍ଷଣ କ୍ଷଣ କରେ ପୁଣି ପ୍ରଳାପ ॥
ମୃଦୁ ପବନ କୁସୁମ ଚନ୍ଦନ । ବିଧୁ କିରଣ ଉଶୀର ଲେପନ ॥
ହରି ନ ପାରେ ତାର ଦେହ ତାପ । ବୃଥା ସିନା ଆମ୍ଭ ଯତ୍ନ କଳାପ ॥
ବାହ୍ୟ ପ୍ରୟୋଗେ କିସ ହେବ କହ । ଜଳେ ତା ମନେ ଶ୍ୟାମର ବିରହ ॥
ରଖିବାକୁ ଆଜ ରାଧା ଜୀବନ । ସଖି ! ଉପାୟ କର ଉଦ୍ଭାବନ ॥"
ଦୂତୀ ବଚନ ଶୁଣି ସଖୀମାନେ । କ୍ଷଣେ ମଉନେ ରହିଲେ ସେ ସ୍ଥାନେ ॥
ଦୁଃଖେ ଲଳିତା କହିଲା ବଚନ । ଶୁଣ ମୋ କଥା ସର୍ବେ ଦେଇ ମନ ॥
"ନବଘନ-ଶ୍ୟାମ ବିନା ରାଧାର । ମୋତେ ନ ଦିଶେ ଆନ ପ୍ରତିକାର ॥
ଦୂତି ! ଅଟ ଗୋ ପରମ ଚତୁରୀ । ଆଜ ବେଗ କରି ଯାଅ ମଥୁରା ॥
ଛଳେ ଅଥବା ବଳେ କଉଶଳେ । ଘେନି ଆସ ତାଙ୍କୁ ବ୍ରଜମଣ୍ଡଳେ ॥"

---

* ବୈଦେହୀଶ ବିଳାସ "ବୋଲେ ସୁଗ୍ରୀବେ ରାମ ଶ୍ଳେଷଭାଷା" ବୃତ୍ତେ

ଦୂତୀ କହେ,"ମୁଁ ଶ୍ୟାମଙ୍କୁ ସହଜେ । ଘେନି ଆସି ପାରିବି ଗୋ ବରଜେ ॥
ଯାଇଅଛୁ କି ସଜନି ପାସୋରି । ଛେଡ଼େ ଅଯୁକ୍ତ ମୋ ନନ୍ଦକିଶୋର ।
ଯଥା ନିଷାଦୀ ଅଙ୍କୁଶେ କୁଞ୍ଜରେ । ଚାଳେ ଚାଳିଛି ମୁଁ ତାଙ୍କୁ କୁଞ୍ଜରେ ॥
କିନ୍ତୁ ଶ୍ରୀମତୀ ଅନୁମତି ବିନା । ମଧୁପୁରକୁ ମୁଁ ନ ଯାଏଁ ସିନା ॥
ଆଜ ଯିବାକୁ କଂସରାଜା ଦେଶ । ଚାହିଁ ଘେନିବା ଶ୍ରୀମତୀ ଆଦେଶ ॥"
ଦୂତୀ ବଚନେ ହୋଇଣ ମୋହିତ । ଗଲେ ରାଧା ପାଶେ ସର୍ବେ ତ୍ୱରିତ ॥
ଯହିଁ କମଳଦଳ ଶଯ୍ୟନରେ । ରାଧା ଶୋଇଛନ୍ତି ବିରହ ତାପରେ ।
ଯଥା ଦିବସେ ବିନାଶ ସମୟେ । ବିଭାବସୁ ବିମ୍ବ ପଦ୍ମିନୀଚୟେ ॥
ଶୋକ କରୁଣ-କଣ୍ଠେ ଡାକେ ଦୂତୀ । "ଜୟ ଶ୍ୟାମଗତି-ପ୍ରାଣା-ଶ୍ରୀମତି !"
'ଶ୍ୟାମ' ଶବଦ କି ସୁଧା ସେଚନ । ରାଧା ଶ୍ରବଣେ ହୋଇଲା ଚେତନ ॥
ରାଧା ଚାହିଁଲେ ଫେଡ଼ିଣ ନୟନ । ସହଚରୀଙ୍କ ଦେଖିଣ ବଦନ ॥
କ୍ଷୀଣସ୍ୱରେ ସେ କହିଲେ ତକ୍ଷଣ । "ଆସିଲେଣି ବ୍ରଜେ କି ପ୍ରାଣଧନ ?"
ଦୂତୀ କହଇ, "ଯିବ ତାଙ୍କୁ ଆଣି । ଦିଅ ଶ୍ୟାମବିମୋହିନି ! ମେଲଣି ॥"
ରାଧା କହେ, "ସ୍ନେହ ଥିଲେ ଦୂତିକେ ! ବନ୍ଧୁ ଆସିବେ ତ ମୋର ଅନ୍ତିକେ ॥
ସଖି ଯାଅନା ଯାଅନା ମଥୁରା । ହୋଇ ମୋ ଜୀବନ ପାଇଁ ଆତୁରା ॥
ବ୍ରଜେ ନ ଆସିବେ ନନ୍ଦତନୟ । ସାର ହେବ ଅପମାନ ନିଶ୍ଚୟ ॥"
ଦୂତୀ କହେ, "ଆଜ୍ଞା ଦିଅ ଶ୍ରୀମତି ! ବାନ୍ଧି ଆଣିବି ଯଶୋଦା ସନ୍ତତି ।
ରାଧେ ଶକତି ଅଛି ମୋର ଦେଖି । ନେଲି ଶ୍ୟାମଠୁଁ ଦାସପତ୍ର ଲେଖି ॥
ଆଜ ସେ ପତ୍ରବଳେ ରାଧାଦାସେ । ବାନ୍ଧି ଆଣିଣ ଦେବି ରାଧା ପାଶେ ॥"
ରାଧା କହିଲେ,"ନ ମାନି ମୋ ମନା । ଯଦି ଯିବାକୁ କରିଛ ବାସନା ॥
ତାଙ୍କୁ ବିନୟେ କହିଣ କୋମଳେ । ଘେନି ଆସ ବେଗେ ବ୍ରଜମଣ୍ଡଳେ ॥
ବନ୍ଧା ଛନ୍ଦା ଶୁଣି ଭୟ ପାଇବେ । ବନ୍ଧା ଭୟେ ବା ଫେରି ନ ଆସିବେ ।
କେତେ ଥର ବନ୍ଧନର କଦନ । ବ୍ରଜେ ସହିଛନ୍ତି ମୋ ପ୍ରାଣଧନ ॥
ଦିନେ ଅର୍ଜ୍ଜୁନବୃକ୍ଷେ ବ୍ରଜେଶ୍ୱରୀ । ତାଙ୍କୁ ବନ୍ଧନ କଲେ କ୍ରୋଧ କରି ॥
ଖାଇବାରୁ ଚୋରି କରି ନବଣୀ । ତାଙ୍କୁ ବାନ୍ଧିଲେ ବରଜରମଣୀ ॥
ଯାଉ ପଛକେ ମୋ ତୁଚ୍ଛ ଜୀବନ । ସଖି ! ନ କର ବନ୍ଧୁଙ୍କୁ ବନ୍ଧନ ॥

ତାଙ୍କ ପାଇଁ ସିନା ମୋର ଜୀବନ । ତାଙ୍କୁ ମୋ ପାଇଁ ନ କର ବନ୍ଧନ ।”
ଦୂତୀ କହିଲା, “ନ ହେବ ସେ କଥା । କରି ନ ପାରିବ ଏଡ଼େ ହୀନତା ।
ଯେ ଗୋ ମୋ ପାଶେ କରିଛି ସେବନ । କରି ମୋ କରେ କର ସଂସ୍ଥାପନ ।
ଯେ ଗୋ ମୋତେ ଯେମନ୍ତ ହୀନଜନ । କେତେ କହିଛି ବିନୟ ବଚନ ।
ଯାକୁ ବାରମ୍ବାର କେଳି କୁଞ୍ଜରେ । ଲୁଟାଇଲି ତୋ ପାଦ ସରୋଜରେ ।
ତାକୁ କହିବା ବିନୟ ବଚନ । ମୋର ନ ହୋଇବ ଥାଉଁ ଜୀବନ ।”
ରାଧା କହେ, “ଇଷ୍ଟ କାର୍ଯ୍ୟ ସାଧନେ । ବିଜ୍ଞଜନ ନ ଡରେ ଅପମାନେ ।
ଧିକ ମୋ ମାନେ ମୋର ଗଳାହାର । କରିଛନ୍ତି କି ନୀଚତା ସ୍ୱୀକାର ।
ଦିନେ ଦିନେ ମୁଁ କରି ଗୁରୁ ମାନ । କେତେ କଷ୍ଟ ବନ୍ଧୁଙ୍କୁ କଲି ଦାନ ।
ପାଇ କରେ ଯା ନ କଲି ଯତନ । ପାଦେ ଫିଙ୍ଗିଲି ଅମୂଲ୍ୟ ରତନ ।
ତେଜି ଗଲ ଦିନୁଁ ବ୍ରଜଭୁବନ । ହୋଇଛନ୍ତି ଦେଖିବାକୁ ସ୍ୱପନ ।
ନ ପୁଚ୍ଛିଲେ ସେ ମୋହର ବାରତା । ତାଙ୍କୁ ନ କହିବ କିଛି ମୋ କଥା ।”
ଶୁଣି ଦୂତୀ କହେ, “ଅଗୋ ରମ୍ଭୋରୁ ! କିପାଁ ଶ୍ୟାମଙ୍କୁ ଏତେ ଦୟା କରୁ ?
ଯାର ହୃଦୟ ପାଷାଣେ ନିର୍ମିତ । ତାକୁ ଦୟା ତ ନୁହଇ ଉଚିତ ।
ଯେଉଁ ଦାସ ଦାସତ୍ୱ ନିଜେ ତେଜେ । ଦଣ୍ଡଯୋଗ୍ୟ ନିଶ୍ଚର ଅଟେ ସେ ଯେ ।
ବୋଲି ଶଠ ଦୟାହୀନ ତସ୍କରେ । କିଏ ଜଗତେ ସ୍ନେହ ଦୟା କରେ ?”
ଶୁଣି କହନ୍ତି କୁସୁମ ନନ୍ଦିନୀ । “ନିନ୍ଦା ନ କର ବନ୍ଧୁଙ୍କୁ ସଜନି ।
ଦୟାଗୁଣରେ କିଏ ତାଙ୍କ ସରି । ମୁହିଁ କାରଣ କଷ୍ଟର ମୋହର ।
ତାଙ୍କୁ ଦେଇଛି ବହୁ ଅପମାନ । ସେହି ଦୋଷକୁ ଏ ଦଣ୍ଡ ବିଧାନ ।
ମୋର ପ୍ରଭୁ ସେ ମୁଁ ତାଙ୍କ କିଙ୍କରୀ । ହେଲେ ସ୍ନେହେ ସେ ମୋର ଦାସପରି ।
ଗୈର ନୁହନ୍ତି ମୋର ପ୍ରାଣଧନ । ତାଙ୍କୁ ଇଚ୍ଛାରେ ଯାଚିଦେଲି ମନ ।
ରହ ସଜ ହୋଇ ଅଜ ନିଶାରେ । ଇଚ୍ଛା ଥିଲେ ଯାଅ କାଲି ଉଷାରେ ।”
ଦୂତୀ କହଇ, “ଉପହାର କିସ । ପଠାଇବ ବନ୍ଧୁ ପାଶେ ବାଳୀଶ ?”
ତାହା ଶୁଣି ସନ୍ତାପେ ବୋଲେ ରାଇ । “ଉପହାର ଦେବାକୁ କିଛି ନାହିଁ ।
‘ମୋର’ ବୋଲି କହିବ ସଜନି ରେ ! ନାହିଁ ଏମନ୍ତ କିଛି ଅବନୀରେ ।
ମନ ଜୀବନ ଦେହ ଧନ ମାନ । ସବୁ ବନ୍ଧୁଙ୍କୁ କରିଅଛି ଦାନ ।

ସେ ତ ଅନନ୍ତ ତନୟରେ ସାର । ସେହୁ ତାହାଙ୍କ ଯୋଗ୍ୟ ଉପହାର ॥
ସଖି ! ମୁଁ ସବୁ କରି ବିସର୍ଜନ । ପାଇଥିଲି ଏକ ନୀଳରତନ ॥
ଏବେ ସେ ମହାରତନେ ହରାଇ । ହେଲି ହିଯୁରେ ଅଭାଗିନୀ ମୁହିଁ ॥
ପୁଣି ପାଇବି ମୋର ସେ ରତନେ । 'ନାହିଁ ତିଳେହେଁ ଆଶା ମୋର ମନେ ।"
କହୁ ଏତେକ କାନ୍ଦିଲେ ଶ୍ରୀମତୀ । ବସି ନୀରବେ ମୁଖ କରି ଘିତ ।୭୬।
ତାଙ୍କଠାରୁ ଦୂତୀ ନେଲା ମେଲାଣି । କହୁ ମଧୁର ଆଶ୍ୱାସନା ବାଣୀ ॥
ଏବା ଜାଣି ବୁଧେ କର ସ୍ମରଣ । ଗତି ପ୍ରଭୁ ଚିନ୍ତାମଣି ଚରଣ ।୭୭



## ଷୋଡ଼ଶ ଛାନ୍ଦ

ରାଗ—କୁମ୍ଭକାମୋଦୀ ବୃତ୍ତ *

## ବୃନ୍ଦାର ମଥୁରା ଗମନ

ମଧୁପୁର ଯାତ୍ରା କଲା ବୃନ୍ଦାବନେ ଦୂତିକା ଚତୁରୀ,
ଶ୍ୟାମର ପ୍ରବାସ ନାଶ ପାଇଁ ଶାଣି ରସନା-କତୁରୀ । ୧
ଲଳିତା ବିଶାଖା କିଛି ଦୂର ସଙ୍ଗେ କଲେକ ଗମନ,
ଦୂତୀକି ମେଲାଣି ଦେଇଣ ଭାଷିଲେ ଶୁଭଦ ବଚନ । ୨
"ଶିବ-କାମ୍ୟା ଦୟା କରି ବିଦେଶରେ ଦେଉନ୍ତୁ କୁଶଳ,
ଶ୍ୟାମଙ୍କୁ ସଙ୍ଗରେ ଘେନି ଫେରି ଆସ ବରଜ ମଣ୍ଡଳ ।" ୩
ହସି ଦୂତୀ କହେ, "ଦୂତୀ-ଝଞ୍ଜାବାତ ମଥୁରା ଗଗନେ
ବହିଲେ ଉଡ଼ି କି ନ ଆସିବେ ନବ-ଘନ ଏ ଭୁବନେ ?" ୪
ଗଲି ଧୀର ଧୀର ଏବା ଶେଷେ ଦୂତୀ ହୋଇଲା ପ୍ରବେଶ,
ଯହିଁ ରମ୍ୟହର୍ମ୍ୟେ ଛନ୍ତି ମଧୁପୁର ନବୀନ ନରେଶ । ୫
ଭିତର-ଗମନ ରୋଧି ଦ୍ୱାରବାନ କହିଲା ସତ୍ୱରେ,
"ଅଭାଗୀ ଲଳନା ! ଅନୁମତି ବିନା ପ୍ରବେଶୁ ଭିତରେ । ୬

* ବୈଦେହୀଶ ବିଳାସ "ବିନାଶ ନାସା ଶ୍ରବଣ ସୂର୍ପଣଖା" ଗୀତେ

କାହିଁ ତୋ ନିବାସ   ତୋର ନାମ କିସ   କିପାଇଁ ଅଗତା ?
କହ ତ୍ୱରା   ନରବରଙ୍କ ସମ୍ମୁଖରେ   ଦେବି ମୁଁ ବାରତା ।” ୭
“ରାଧା ବ୍ରଜେଶ୍ୱରୀ   ଦୂତୀ ମୁଁ ତାଙ୍କର   ବରଜେ ନିବାସ,
ନାମ ମୋର ବୃନ୍ଦା,”   କହେ ଦୂତୀ କରି   ସାହସ ପ୍ରକାଶ । ୮
“ବ୍ରଜଧାମ ତେଜି   ଅତି କଷ୍ଟେ ଅଜି   ଈଶ୍ୱରୀ ଆଦେଶେ,
ତାଙ୍କ କ୍ରୀତଦାସେ   ଧରିନେବା ପାଇଁ   ଅସିଛି ଏ ଦେଶେ । ୯
ହୃଦୟ-ରତନ-ମୂଲ୍ୟ ଦାନେ ତାଙ୍କୁ   କିଣିଲେ ଶ୍ରୀମତୀ,
ସେ ଏବେ ପଳାଇ   ଅସି କରିଛନ୍ତି   ଏ ଦେଶେ ବସତି । ୧୦
ତୋର ନରପତି   ସମ୍ମୁଖରେ କହ ଯା   ମୋର ଏ ବଚନ,
ନ ଲୋଡ଼ଇଁ ଅନ୍ୟ   କିଛି, ମାତ୍ର ଲୋଡ଼େଁ   ସେ ଦାସ ବନ୍ଧନ ।” ୧୧
ଦୂତୀର ବଚନ   ଶୁଣି ଦ୍ୱାରବାନ   ସତ୍ୱର ଚଳିଲା,
କହିବାକୁ ବାର୍ତ୍ତା   ବଶେଷି ନରେଶ   ସମ୍ମୁଖରେ ମିଳିଲା । ୧୨
ଦ୍ୱାଃସ୍ଥ କଥା ଶୁଣି   ବେଣୁପାଣି କଲେ   ବଚନ ପ୍ରକଟ,
“ଅହେ ଦ୍ୱାଃସ୍ଥ ! ଯାଇ   ଶୀଘ୍ରଗତି ଦୂତୀ   ଅଣ ମୋ ନିକଟ ।” ୧୩
ଶ୍ୟାମ ମନ୍ଦ ମନ୍ଦ   ହସିଲେ ଦୂତୀକି   ଦୂରରୁ ନିରେଖି,
ତାହା କର ଧରି   ବସାଇଲେ ନେଇ   ଅସନ ଉପେକ୍ଷି । ୧୪
ବରଜ-ବାସୀଙ୍କ   କୁଶଳ ଦୂତୀକି   ପୁଚ୍ଛିଲେ ଶ୍ରୀପତି,
“କହ ଦୂତି ! ଶୁଭେ   ଛନ୍ତି ଟିକି ନନ୍ଦ   ଯଶୋଦା ଶ୍ରୀମତୀ ? ୧୫
ଛନ୍ତି ଟିକି ଶୁଭେ   ବରଜ-ବାଳକେ   ବରଜ-ରମଣୀ,
ଏବେ ମୋତେ ଶତେ   ରଖିଛନ୍ତି ଟିକି   କନକ-ବରଣୀ ? ୧୬
କହ ଗୋ ସୁବାଣି !   ସବୁ ତ ମଙ୍ଗଳ   ଗୋପାଳବୃନ୍ଦର,
ମଙ୍ଗଳ ତ ବତ୍ସା   ସୁରଭିଗଣର   କହ ଗୋ ସତ୍ୱର ? ୧୭
ବୃନ୍ଦାବନ ଶୋଭା   ନେଣମନଲୋଭା   ଖେଳେ ମୋ ନୟନେ,
ନ ପାରିବ ବ୍ରଜ   ଭୁଲି ମୁଁ ଯାବତ   ରହିବି ଜୀବନେ । ୧୮
ସୁରମାଳମାଳ   ନବଡ଼ ପଲ୍ଲବ   ମର୍କତଗଞ୍ଜନ,
ତହିଁ ହେମ ରକ୍ତ   ଶ୍ୱେତ ଲତାଜାଲ   ନୟନରଞ୍ଜନ । ୧୯

ବୃନ୍ଦାବନ-ଶୋଭାସାର କୁସୁମିତ   କଦମ୍ବ ନିକର,
ତହିଁ ଚନ୍ଦ୍ରକାନ୍ତ   ବିବିଧ ବିହଙ୍ଗ—ସମୂହ ସୁସ୍ୱର । ୨୦
ଭ୍ରମର-ଗୁଞ୍ଜନ-ମଧୁରିତ ସ୍ନିଗ୍ଧ   ଲତିକାମଣ୍ଡପ,
ନୟନ-ପ୍ରୀତିକର   ଫୁଲ୍ଲ-ପତ୍ର-ଶୋଭି   ବିବିଧ ପାଦପ । ୨୧
ଯମୁନା-ତରଙ୍ଗ-ଶୀତଳ-ସୁଗନ୍ଧି   ମୃଦୁଳ ସମୀର,
ମୃଗଯୂଥ-ଲୀଳାସ୍ଥିତ ସୁହରିତ   ପ୍ରାନ୍ତର ରୁଚିର । ୨୨
ସୁଧାମୟ ଫଳଭରେ ଅବନତ   ପାଦପ ମୂଳରେ,
ଲତା-ଗୁଲ୍ମ-ଶୋଭି   ନିକୁଞ୍ଜ କୁଟୀର   ଯମୁନା କୂଳରେ । ୨୩
ମରାଳ-ମାଳିନୀ   ପଙ୍କଜ-ଶୋଭିନୀ   ସୁରମ୍ୟ-ପୁଳିନା,
ମୃଦୁଳ-ନୀଳ-ବୀଚିମାଳ-ଭରସା   ତଟିନୀ ଯମୁନା ।” ୨୪
ଭାଷିଲ୍ଲ ଦୂତିକା,   “ଅହେ ବ୍ରଜ-ପଦ୍ମ-କାନନ-ଭାସ୍କର !
ନ ପାରେ ବର୍ଣ୍ଣିନା   କରି ମୋ ରସନା   ଦୁର୍ଗତି ବ୍ରଜର । ୨୫
ବରଜଧାମର   ଅନୁପମ ଶୋଭା   ନୟନ-ରଞ୍ଜନ,
ଏବେ ତୁମ୍ଭ ସଙ୍ଗେ   ଅସିଅଛୁ ଶ୍ୟାମ !   ମଥୁରା ଭୁବନ । ୨୬
କାନ୍ଦୁଛନ୍ତି ତୁମ୍ଭ   ବିନା ଦବା ନିଶି   ଯଶୋଦା ଦୁଃଖିନୀ,
ହୋଇଣ ଅଧୀରା   ଯେସନେ ମଣିକି   ହରାଇ ଫଣିନୀ । ୨୭
କେବେ ବାତୁଳାଣୀ   ପରି ସେ ଭ୍ରମନ୍ତି   ଏ ଦାଣ୍ଡେ ସେ ଦାଣ୍ଡେ,
ଧେନୁ ନିଜ ଙ୍କରେ   କ୍ଷୀର ସର ଦଧି   ପୂରାଇ ସୁଭାଣ୍ଡେ । ୨୮
‘କାହିଁ କାହ୍ନୁ’ କହି   କେବେ କାନ୍ଦ କେବେ   ମଉନେ ବସନ୍ତି,
‘ରେ ପ୍ରାଣପ୍ରତିମା ! କୋଳେ ଅସ’ କହି   କେବେ ସେ ହସନ୍ତି ।୨୯
କେବେ କ୍ଷୀରଅନ୍ନ   ବ୍ୟଞ୍ଜନ ମୁରଲୀ   ଛନ୍ଦାଦ ଲଉଡ଼ି,
‘ଶ୍ୟାମ ଏହିକ୍ଷଣି   ବନେ ଯିବ’ କହି   ରଖନ୍ତି ସଜାଡ଼ି । ୩୦
କେବେ ବା କଦମ୍ବ   ବନରେ କେବେ ବା   ଯମୁନା ତଟରେ,
ଶ୍ୟାମ ରାମ କରି   ଡାକନ୍ତି କାନ୍ଦଣି   ସୁଦୀର୍ଘ କଣ୍ଠରେ । ୩୧
ବସିଲ ଠାବରୁ   ଉଠି ନ ପାରନ୍ତି   ବରଜଭୂପାଳ,
ସଦା ଅଧୋମୁଖେ   କାନ୍ଦୁଛନ୍ତି କରେ   ପ୍ରହାରି କପାଳ । ୩୨

ଏବେ ତ ଶାରଦ ପଦ୍ମବନ ପର ଗୋପିନୀମଣ୍ଡଳ,
ନିରାଶଯୁକ୍ତ ଦୀନ ପର ଏବେ ବ୍ରଜ-କୁମାର ସକଳ । ୩୩
ରାଧିକାର ଦଶା କିସ ମୁଁ କହିବି ରାଧିକାରଞ୍ଜନ !
ହେଉଛି ସନ୍ଦେହ ଥିବ କି ନ ଥିବ ରାଧିକା ଜୀବନ । ୩୪
ନିଦାଘରେ କ୍ଷୀଣ ଜଳବେଣୀ ଯଥା ସୈକତଶୟନେ,
ଶତପତ୍ର ପତ୍ର ଶୟନେ ପଡ଼ିଛି ରାଧିକା ତେସନେ । ୩୫
ସନ୍ନିପାତ ରୋଗୀ ପରି କ୍ଷଣକ୍ଷଣ ହୁଏ ସେ ଅଚେତ,
କ୍ଷଣକେ କରଇ ପ୍ରଳାପ କ୍ଷଣକେ ହୁଅଇ ସଚେତ । ୩୬
ବିଶେଷି କିସ ମୁଁ କହିବି ଶ୍ୟାମ ହେ ! ସତ୍ୱର ଗମନେ,
ତାର ପିଣ୍ଡେ ପ୍ରାଣ ଥାଉଁ ବାରେ ତାକୁ ଦେଖ ହେ ନୟନେ ।୩୭
ତୁମ୍ଭ ବିନା ବ୍ରଜ ହୁଏ ଛାରଖାର ହେ ବ୍ରଜମୋହନ !
ତୁମ୍ଭ ସ୍ନେହଗତପ୍ରାଣା ରାଧିକାର ନିଭୁଛି ଜୀବନ । ୩୮
ବୃନ୍ଦାବନ ରମ୍ୟ ଶୋଭାକୁ ହରାଇ ହୋଇଛି ଅନ୍ଧାର,
ବସନ୍ତେ ପ୍ରୋଷିତ-ଭର୍ତ୍ତୃକା ସୁସାଧ୍ୱୀ ଯୁବତୀ ପ୍ରକାର । ୩୯
ବ୍ରଜରାଜ ! ଆଜ ସଜ ହୁଅ ବ୍ରଜେ ଗମିବା କାରଣ,
ରାଜବେଶ ଛାଡ଼ି ରଖୁଆଳ ବେଶ କର ହେ ଧାରଣ । ୪୦
ତୁମ୍ଭର ଏ ବେଶ ଦେଖି ବ୍ରଜଧାମେ ପଳାଇ ତରାସେ,
ଭୀରୁ ବ୍ରଜଭୀରୁ ଭୀରୁ ବ୍ରଜବାଳ ଲୁଚିବେ ନିବାସେ । ୪୧
କେକୀପୁଚ୍ଛେ ଚୂଡ଼ା ବାନ୍ଧ ଅଙ୍ଗ ଢେଙ୍କ ରତନଶୀର୍ଷକ,
ଛାଡ଼ି ରାଜଦଣ୍ଡ ଧର କରେ ତୁମ୍ଭ ମୁରଲୀ ଶିଣ୍ଡୁକ । ୪୨
ଗୁନ୍ଥ ବନମାଳ କର ବିଳମ୍ବିତ ହୃଦୟଦେଶରେ,
ଯେସନ ସଯତନେ ସଜାଡ଼ି କାଛେଣୀ ହେମାଭ ବାସରେ ।” ୪୩
ଦୂତୀ ବାଣୀ ଶୁଣି ଦେବ ଚକ୍ରପାଣି କରନ୍ତି ବିଚାର,
ଅହୋ ମୋ ବିଚ୍ଛେଦେ ଭୁଞ୍ଜନ୍ତି ଗୋକୁଳେ କଦନ ଅପାର । ୪୪
ପ୍ରେମ ଭକ୍ତି ସ୍ନେହବଶେ ଫେର ବ୍ରଜେ କଲେ ମୁଁ ଗମନ,
କରି ନ ପାରିବି ଜଗତର ଶାନ୍ତିସ୍ଥାପନ ସାଧନ । ୪୫

ସାଧିବାକୁ ଲୀଳାରଙ୍ଗେ ଦୁଷ୍ଟ ନାଶ   ଶିଷ୍ଟର ପାଳନ,
ଧରିଅଛୁ ନିଜ   ଇଚ୍ଛାରେ ଏ ମୂରେ   ମାନବ ଜୀବନ । ୪୬
ପ୍ରଲୋଭନେ ପଡି   ହେଳାଇ କର୍ତ୍ତବ୍ୟ   ଯେ ଜନ ପାମର,
ଦୁଷ୍ଟ ରାଜନ୍ୟ   ରାକ୍ଷସ-ଭାବରେ ଧରା   ହୋଇଛୁ କାତର । ୪୭
କୁରୁକ୍ଷେତ୍ର   ମହାଯଜ୍ଞେ ତାଙ୍କ ପ୍ରାଣ   ଆହୁତି କରିବ,
ଏ ମହା ଉଦ୍ଦେଶ୍ୟ   ତେଜିଣ କେମନ୍ତେ   ବ୍ରଜକୁ ଫେରିବ ! ୪୮
କପଟେ କର୍କଶ   ଭାବକୁ ପ୍ରକାଶ   ଯଦି ନ କରିବ,
ବ୍ରଜଧାମ ପ୍ରେମଭକ୍ତି ସ୍ନେହଜାଲ   କାଟି ନ ପାରିବ । ୪୯
କିଛି କାଳ ଅନ୍ତେ   ବ୍ରଜବାସିଙ୍କି   ସମୀପେ ଆଣିବ,
ସୁଭଦ୍ରା ପାର୍ଥଙ୍କୁ   ପରିଣୟେ ବାନ୍ଧି   କର୍ତ୍ତବ୍ୟ ସାଧିବ । ୫୦
ଏମନ୍ତ ଭାଳିଣ   ପଙ୍କଜ-ନୟନ   ବୋଇଲେ ବଚନେ,
"ଦୂତି ! ବ୍ରଜଧାମେ   ବାହୁଡି ଯିବାକୁ   ନ ବଳେ ମୋ ମନ । ୫୧
ବ୍ରଜେ ବହୁକଷ୍ଟ   ଦେଇଛନ୍ତି ମୋତେ   ରାଧିକା ସୁନ୍ଦରୀ,
ସେ ସବୁ ସୁମରି   ହୃଦୟ ମୋହର   ହେଉଛି ବିଦାରି । ୫୨
ଯେତେ ଅପମାନ   ସହିଛି ମୁଁ କୁଞ୍ଜେ   ଦୂତି ! କି ନ ଜାଣ ?
ନ ଯାଏ ମନରୁ   ରାଧାର ଭ୍ରୂକୁଟୀ   ବଚନ-ଦୁର୍ବାଣ । ୫୩
ତୁମ୍ଭ କଟୁବାଣୀ   ଭୁଲି ନାହିଁ ମୋର   ଏ ବେନି ଶ୍ରବଣ,
ମୋର କର   ଭୁଲି ନାହିଁ ଗୋ ଦୂତିକେ !   ରାଧିକା ଚରଣ । ୫୪
ପୁଣି କଷ୍ଟେ ପଡ଼ି   ମରିବାକୁ ମୋତେ   ନ କର ଜଞ୍ଜାଳ,
ଆଜ ମୁଁ ବ୍ରଜକୁ   ନ ଯିବି ଅବନୀ   ଗମିଲେ ପାତାଳ । ୫୫
ପୂର୍ବ ପରି ତୁମ୍ଭ   କର ଧରି ପୁଣି   କରୁଛି ବିନୟ,
ଯାଅ ଫେରି ବ୍ରଜେ   ମୁଁ ଫେରି ନ ଯିବି କହୁଛି ନିଶ୍ଚୟ ।"୫୬
କହେ ଦୂତୀ, "ଯଦି   ନ ଫେରିବ ବ୍ରଜେ   ବିନୟବଚନେ,
ରାଧାର ଆଦେଶେ   ବାନ୍ଧି ନେବା ଯିବ   କଠିନ ବନ୍ଧନେ । ୫୭
କ୍ଷୀର ସର ଦଧି   ଚୋରି କରି ଶ୍ୟାମ   ଯେତେତ ଖାଇଲ,
ରାଧିକାର ମନ   ଚୋରି କରି ଶେଷେ   ପଳାଇ ଆଇଲ ।"୫୮

ଦୂତୀର ବଚନେ   ମନ୍ଦ ମନ୍ଦ ହସି   କହନ୍ତି କେଶବ,
"କିପାଁ ଅବଗୃରେ   ଢାଳୁଛ ମୋ ଶିରେ   ଦୂଷଣ ସ୍ୱରବ ? ୫୯
ମୁହିଁ କି ଏକାକୀ   ଚୋରି କରୁଥିଲି   କଳଙ୍କେ ନ ଡର,
ନନ୍ଦୁ ବଂଶୀ ଚୋର   କରିଥିଲେ   ପରା ତୁମ୍ଭର ଈଶ୍ୱରୀ ? ୬୦
ମୁଁ ବ୍ରଜେ ଶବଧ   ବନ୍ଧନ ସହୁଛି   କି ପ୍ରୀତି ବନ୍ଧନେ,
ରକ୍ତ ଚନ୍ଦନକୁ   କହୁଛ ବୋଲିଣ   ଭାଳିଲି ମୁଁ ମନେ । ୬୧
ରାଧା ପାଇଁ ମୁହିଁ   ଲଭିଛୁ ଗୋପରେ   କଳଙ୍କ ଅପାର,
ସେ ମୋତେ ପ୍ରେମ-ବନ୍ଧନେ ବାନ୍ଧି ମାନେ କଳେକ ପ୍ରହାର ।"୬୨
ଲଜ୍ଜା କ୍ରୋଧ ଖେଦେ   ଜର ଜର ଦୂତୀ   ବୋଲଇ ବଚନ,
"ପ୍ରେମବତୀ ମାନ   କି ମଧୁର ଜାଣେ   ରସିକ ସେ ଜନ । ୬୩
ସରୋଜିନୀ ମଧୁପାନ   ସ୍ୱାଦ ସିନା   ଜାଣଇ ଭ୍ରମର,
କାହୁଁ ସେ ଜାଣିବ   ଶାଳ୍ମଳୀ କୁସୁମେ   ଯାହାର ଆଦର ? ୬୪
କୁବୁଜାସୁନ୍ଦରୀ   ଯା ମନକୁ ହରେ   ତା କରେ ଶ୍ରୀମତୀ
ଭ୍ରାନ୍ତିରେ ପଡ଼ିଣ ସମର୍ପିଲା ମନ ଛି ! ଛି ! କି ଦୁର୍ଗତି । ୬୫
କି ସୁଖ-ମିଳନ   ହୋଇଛି ତ୍ରିଭଙ୍ଗ   ପାଇଛ ତ୍ରିଭଙ୍ଗୀ,
ବଙ୍କା ଯୋଗ୍ୟା ବାଙ୍କୀ   ଅଯୋଗ୍ୟା କିଶୋରୀ   ତ୍ରିଭଙ୍ଗୀ ଶୁଭାଙ୍ଗୀ ।୬୬
ଶ୍ୟାମ ହେ ! କୁଜରେ   ଏତେ ଶ୍ରଦ୍ଧା ଭାବ   ଥିଲାତ ନ ଜାଣି,
ଜାଣିଥିଲେ ରାଧା   ପୃଷ୍ଠେ ହେମକୁଜ   ଥାନ୍ତୁ ହେ ନିର୍ମାଣି । ୬୭
ରମଣୀଘାତକ   ବାଲ୍ୟରୁ ହୋଇଛ   ନାଶିଛ ପୂତନା,
ଏବେ ବ୍ରଜବଧୂ   ରାଧା ବିନାଶରେ   କରିଛ ବାସନା । ୬୮
ଯଦି ରାଧା ପାଇଁ   ହୋଇଥିଲ ଶ୍ୟାମ   ଗୋକୁଳେ କଳଙ୍କୀ,
ଏବେ ସେ କଳଙ୍କ   ଧୋଇଛ ଯଶରେ   କୁଜକୁ ସଲଖି । ୬୯
କିଏ କାହା ପାଇଁ   ଲଭିଛି କଳଙ୍କ   ଭାଳ ହେ ମନରେ,
କିଏ ବଜାଇଲା   ମୋହନମୁରଲୀ   କା ନାମ ବନରେ ? ୭୦
ଥିଲ ରଖୁଆଳ   ହୋଇଛ ଭୂପାଳ   କଂସର ଭୁବନେ,
ବସ୍ତ୍ରା ଚକ୍ଷା ବୃନ୍ଦାବନ   ଅଉ ମନେ   ପଡ଼ିବ କେସନେ ? ୭୧

ଶିଷ୍ୟ ପରି ସିନା ଶିରେ ଘେନୁଥିଲି ଦୂତୀର ବଚନ,
ଯେବେ ବସ୍ତ୍ରାଗଣ ଘେନି କରୁଥିଲ ବନରେ ଭ୍ରମଣ । ୭୨
ରାଧାବନ୍ଧୁ ଏବେ କୁବୁଜୀର ବନ୍ଧୁ ଛି । ଛି । ଛି । କି ଲଜ୍ଜା,
ଯମୁନାଜଳରେ ମଜ୍ଜି ମରିବାକୁ ଇଚ୍ଛଇ ମୁଁ ଅଜ୍ଞ । ୭୩
ରାଧିକାର ମନା ନ ମାନି ମୁଁ ସିନା ମଥୁରା ଆସିଲି,
ସୁଭାଗ୍ୟ ମୋହର କୁଜାକୁ ଶ୍ୟାମର ବାମରେ ଦେଖିଲି । ୭୪
ରାଧାକୁ ଦେଇଛ ପାସୋର ଏଥିରେ ନାହିଁ ମୋ ବିସ୍ମୟ,
ମଣ୍ଡୁକ ପ୍ରାବୃଟ ପାଇଲେ ଲୋଡ଼େ କି ବସନ୍ତ ସମୟ ? ୭୫
ବୃଦ୍ଧ ପିତା ମାତାଠାରେ କେମନ୍ତେ ହେ ହୋଇଲ ନିର୍ଦ୍ଦୟ ?
ଉହୁ । କି କଠିନ ପାଷାଣ ସମାନ ତୁମ୍ଭର ହୃଦୟ । ୭୬
ତୁମ୍ଭଙ୍କୁ ନେବାକୁ ଅସି ନାହିଁ ଶ୍ୟାମ ଦେଖି ମୁଁ ଅସିଛି,
କେବଳ ବ୍ରଜପାଇଁ ବ୍ରଜେ ଯିବାକୁ ତୁମ୍ଭଙ୍କୁ ଭାଷିଛି । ୭୭
ଘେନି ତୁ ମେଲାଣି ରହିଥାଅ ସୁଖେ ଭୂପାଳାସନରେ,
ଭ୍ରମେ ସୁଦ୍ଧା ଶ୍ୟାମପ୍ରାଣା ରାଧିକାକୁ ନ କର ମନରେ ।"୭୮
ଅଶ୍ରୁଧାରା ମୁଞ୍ଚି ନିରଶ-ହୃଦୟେ ଫେରିଲା ଦୂତିକା,
ବୁଧେ ଶନ୍ତାମଣି ଚରଣ ସ୍ମରଣ କର ହେ ଜୀବିକା । ୭୯



## ସପ୍ତଦଶ ଛାନ୍ଦ

ରାଗ—ବରାଡ଼ି ଅଷାଢ଼ଶୁକ୍ଳବାଣୀ *

## ନନ୍ଦ ଓ ବ୍ରଜବାଳକମାନଙ୍କର ମଥୁରା ଗମନ

ଦିନେ ଯଶୋଦା ନନ୍ଦକୁ ଅନାଇଁ, କାନ୍ଦି କହିଲା,"ହେ ଗୋକୁଳସାଇଁ !
ବହୁ ଦିନରୁ ମଧୁପୁର ଯାଇ, ବ୍ରଜେ ଲେଉଟି ନ ଅସେ କିପାଇଁ,
ମୋ ପ୍ରାଣ କହ୍ନାଇ, ତା କଥା କି ତୁମ୍ଭ ମନରେ ନାହିଁ ? ୧

* ବୈଦେହୀଶ ବିଳାସ "ବଟକ ବିପିଥିଲା ଧ୍ରୁବ ଛ୍ୱାରେ" ରାଗ

ମଧୁପୁରରେ କୃଷ୍ଣ ରଖନ୍ତାକର, ଅଜ୍ଞାନ ଶିଶୁ ମୋ ବେନି କୁମର,
ରଖମାନଙ୍କର ନାହିଁ ଗବେଚ, ତେଣୁ ଶଙ୍କା ମନେ ହୁଏ ଅନେକ,
ନେବାକୁ ବପଦ, ଫେର ନ ଆସେ ବା ନବନୀରଦ । ୨

କାଲି ନିଶିରେ ଦେଖିଛି ସ୍ୱପନ, ଧର ଅଞ୍ଚଳ ମୋ ନୀଳରତନ,
କାଙ୍ଗାଳ ଭଳ ମାଗେ ସର-ଅନ୍ନ, ଶୁଖି ଯାଇଛି ତା ଚନ୍ଦ୍ରବଦନ,
ହୋଇଛି ମଳିନ, ତା ଅଙ୍ଗ ନବୀନ ନୀଳ-ନଳିନ । ୩

ଆଜ ପ୍ରାଣେଶ୍ୱର କର ଗମନ, ଯହିଁ ଅଛନ୍ତି ମୋ ଅଞ୍ଚଳଧନ,
ନ ଦେଖି ତାଙ୍କ ଶଶାଙ୍କ-ବଦନ, ହେଲାଣି ଭାର ମୋତେ ଏ ଜୀବନ,
ବଳମ୍ବ ନ କର, ନେଇ ଆସ ମୋ ଶ୍ୟାମ ବଂଶୀଧର ।"୪

ଯଶୋଦା ବଚନେ କହଇ ନନ୍ଦ, "ପ୍ରିୟେ ! ମୋ ସଙ୍ଗେ ବୃଥା କର ଦ୍ୱନ୍ଦ୍ୱ,
ଶ୍ୟାମ ହୋଇଛି ମଥୁରାନୃପତ, ଆସିବାକୁ ବ୍ରଜେ ନାହିଁ ତା ମତ,
ନୋହିଲେ କପାଇଁ, ମଧୁନଗରୁ ଫେର ଆସୁ ନାହିଁ ? ୫

କଂସ ତ ଗଲାଣି ଶମନଦେଶ, ହୋଇଲାଣି ତ ରଙ୍ଗସଭା ଶେଷ,
ଥିଲେ କଂସଠାରେ ଯେତେ ଅସୁରେ, ସେ ଗଲେଣି ତ ପଳାଇ ସ୍ୱପୁରେ,
କାହୁଅଛୁଁ ସିନା, ଶ୍ୟାମ ଆମ୍ଭଙ୍କୁ ନ କରେ ଭାବନା" । ୬

ଶୁଣି ନନ୍ଦକୁ ବୋଲେ ଯଶୋମତୀ, "ନାହିଁ ତୁମ୍ଭର ସ୍ନେହ କାହ୍ନୁପ୍ରତି,
ଆଜ ଜାଣିଲି ମୁଁ ତୁମ୍ଭର ମନ, ସିନା କପଟେ କରୁଛ ରୋଦନ,
ପିତା ହୃଦ ବନ୍ଧ, ଏତେକାଳ କି ଥାନ୍ତ ଗୃହେ ରହି ? ୭

ଥିଲେ ତୁମ୍ଭର ସ୍ନେହ ମୋର ଶ୍ୟାମେ, ଅବଶ୍ୟ ଯାଇଥାନ୍ତ କଂସଧାମେ,
ସେ ବା ଖାଇବାକୁ ସର ନବଣୀ, ତାକୁ ପ୍ରମାଦ ପର ମନେ ଗଣି,
ଦୁଷ୍ଟ କଂସମୁଖେ, ଫିଙ୍ଗି ଦେଇ ଏବେ ରହିଛ ସୁଖେ ।"୮

ନନ୍ଦଶ୍ରୁତିରେ ଯଶୋଦା ବଚନ, ବାଜିଲା ଯେସନେ ଅହି ଦଂଶନ,
ନନ୍ଦ କହିଲା, "ନ କର ହିଁଗାସ, ଆଜ ମୁଁ ଯିବି ଆଣି ପୀତବାସ,
ମଥୁରା ଭୁବନେ, ପ୍ରବୃତ୍ତ ହୁଅ ହୁଅ ଆୟୋଜନେ । ୯

ଥିଲେ ବ୍ରଜପୁର କହ୍ନାଇ ମନେ, ସେ କି ଥାଆନ୍ତା ମଥୁରାଭୁବନେ ?
ଯିବ ମୁଁ କଷ୍ଟ ଲଭିଣ ଅପାର, ଦିବା ଅସିବା ମାନ ହେବ ସାର,
ଅପମାନ ପାଇ, ବାହୁଡ଼ି ଅସିବ ମଥୁରା ଯାଇ ।"୧୦

ନନ୍ଦମହିଷୀ ଅତି ଭରତରେ, ଅଣି ସଜାଡ଼ି ରଖିଲ ଭାଣ୍ଡରେ,
ସରବ ଗୋକାତ ଖାଦ୍ୟ ଯେତେକ, ଅମୃତମୟ ବବଧ ପିଷ୍ଟକ,
ଅନନ୍ଦତ ମନେ, ହରଷ ଛଟା ନ ଧରେ ବଦନେ । ୧୧

ଧବ ଶ୍ୱେତଶ୍ମଶ୍ରୁ ଯଥା ତୁଷାର, ଧୃତଦଣ୍ଡରେ ରଖି ଦେହଭାର,
ଗୋପ ଦାଣ୍ଡରେ ବରଜଭୂପତ, ଧୀରେ ମଥୁରାପୁରେ କଲ ଗତ,
ନାନା ଉପହାର, ଘେନି ସଙ୍ଗେ ଗଲେ ବ୍ରଜକୁମାର । ୧୨

କେହୁ କ୍ଷୀର କେହୁ ସର-ଓଦନ, କେହୁ ନବନୀତ ଅନ୍ନ ବ୍ୟଞ୍ଜନ ,
କେହୁ ପିଷ୍ଟକ କେହୁ ଫୁଲହାର, କେହୁ ବନ୍ୟଫଳ ନାନା ପ୍ରକାର,
କେହୁ ଘୃତଭାର, କେହୁ ଯମୁନାର ଶୀତଳନୀର । ୧୩

କେ କହେ ଶ୍ୟାମକୁ ଦେବ ଭୁଞ୍ଜାଇ, କେ କହେ ନାଚବ ବଂଶୀରେ ଗାଇ
କେ କହେ ନାଚିବ ଘେନିଣ ସ୍ୱରେ, କେ କହେ ଗାଇବ ଗୀତ ଛନ୍ଦେ,
ଏମନ୍ତ ପ୍ରକାର, କରନ୍ତ ବାଳକେ ପଥେ ଶଗୁର । ୧୪

କେହୁ ଧାଇଁ ଗାଳତୁରୀ ବଜାଇ, କେହୁ ଧରେ ମୃଗଶିଶୁକୁ ଯାଇ,
କେହୁ ଶିଖୀ ନାଚ ଦେଖି ନାଚଇ, କେହୁ କୁରଙ୍ଗଯୂଥକୁ କହଇ,
"ଆମ୍ଭ ସଙ୍ଗେ ଅସ, ଅଣିବା ବ୍ରଜେ ଅମ୍ଭ ପୀତବାସ ।" ୧୫

ଅନନ୍ଦେ ନାନା କଉତୁକ କର, ଯାଇ ପ୍ରବେଶିଲେ କଂସନଗରୀ,
ସିଂହଦ୍ୱାରରେ ହୋଇଁ ଉପନୀତ, ନରରାଜା ପାଶେ ଯାଇ ତ୍ୱରତ,
କହେ ଦ୍ୱାରପାଳ, 'ଗୋପରୁ ଅଗତ ଗୋପଭୂପାଳ ।' ୧୬

ନନ୍ଦନ୍ଦନ ଶୁଣି ଦ୍ୱାରୀ ବଚନ, ଧାଇଁ ଦ୍ୱାରକୁ ଅସିଲେ ବନ୍ଧନ,
ନନ୍ଦକୁ ଅନନ୍ଦେ କଲେ ବନ୍ଦନ, ସଖାମାନଙ୍କୁ ଦେଲେ ଅଲିଙ୍ଗନ,
ରାଜବେଶ ଦେଖି, କେ ଭୀତ କେ ବା ରହିଲ ନିରେଖି । ୧୭

ସୁତ ଦରଶନେ ନନ୍ଦ ନନ୍ଦନ, ସୁଖାଶ୍ରୁ ଝର୍ଝର କଲ ମୋଚନ,
ଶ୍ୟାମକୁ ନନ୍ଦ ଘେନିଣ କୋଳରେ, ଚୁମ୍ବ ଦେଲ ମୁଖେ ସୁଖଭୋଳରେ,
ତୃପ୍ତ ହେଲ ନେତ୍ର, ତାଳି ପଡ଼େ କି ଗାଢେ ସୁଧାପାତ୍ର । ୧୮
କହିଲ ନନ୍ଦ, "ବରଜ ଅନ୍ଧାର, କହ କି ରୂପରେ ମୋ ଗିରିଧାର !
ତୁହ୍ମ ଜନକ ଜନନୀ ପାସୋର, ରହିଛୁ ଏତେକାଳ କଂସପୁର,
ଶୁଖିଛି ବଦନ, ଅହା କେ ପ୍ରବାସେ କରେ ଯତନ ? ୧୯
ଏ ରୂପ ଦେଖିଲେ ତୋର ଜନନୀ, ନିଜର ଶିର ପିଟିବେ ଅବନୀ,
କାହାପାଇଁ ମୋର ଏତେ ଗୋଧନ, କାହାପାଇଁ ମୋର ଅତୁଳ ଧନ ?"
କହି ଶୋକାନନ୍ଦେ, କାନ୍ଦେ ନନ୍ଦ କୋଳେ ଘେନି ଗୋବିନ୍ଦେ ।୨୦
କହିଲେ ଗୋପସୁତେ ମନାକୁଳେ, "କି ଅଭାବ ଭାଇ ! ତବ ଗୋକୁଳେ ?
ଅଛି ବହୁତ ଦୁଗ୍ଧ ନବନୀତ, କିଙ୍କର ଅମ୍ଭେମାନେ ଅଗଣିତ,
ବୃନ୍ଦାବନ ଧାମ, ଧରେ ନାନା ଫଳ ପତ୍ର କୁସୁମ । ୨୧
ଯମୁନା ଶୀତଳ-ବିମଳ-ନୀର, ଚିର ବସନ୍ତ ସମୀରେ ଅଧୀର,
ମଣ୍ଡିବାକୁ ତବ ଚୂଡ଼ା କଳାପୀ, ଅସଂଖ୍ୟ ଅଛନ୍ତି କାନନ ବ୍ୟାପି,
ହଂସ ପିକକୁଳ, ତରପି ଶୁଣ୍ଡି ରବନ୍ତି ମଞ୍ଜୁଳ । ୨୨
କାହିଁ ଭାଇ ତବ ମୋହନଚୂଡ଼ା, ଗଳୁ ନାହିଁ ତ ଏହି ବେଶଗୁଡ଼ା,
ନାହିଁ ପୀତ ଧଟୀ ପୀତ କାଛେଣୀ, ନାହିଁ ଶିଖୀପୁଚ୍ଛ ସୁଗୁମ୍ଫବେଣୀ,"
ଏମନ୍ତ ବହୁତ, ପ୍ରକାଶିଲେ ଖେଦ ବରଜସୁତ । ୨୩
କେ କହେ,"ଏହା ମୁଁ ମନେ କରୁଛି, ବେଶେ ମାଥୁରଙ୍କ * ନାହିଁ ସୁରୁଚି,
ଦେଖ ଏହି ବେଶ କେମନ୍ତ ହୀନ, ଶ୍ୟାମଶୋଭାକୁ କରିଛି ମଳିନ,
ବିନା ବ୍ରଜେଶ୍ୱରୀ, ବିଶ୍ୱେ କେ ଜାଣେ ଶ୍ୟାମ ବେଶ କରି ।" ୨୪
କେ କହେ, "ଦେଖ ଦେଖ ଗ୍ରୀବା ଭାଇ । ଅଣିଅଛି ସର ପନେ ଘୋଡାଇ,"
କେ କହେ, "ଅଣିଛି ମିଷ୍ଟ ପନୀର", କେ କହେ, "ଅଣିଛି ଯମୁନାନୀର,"
କେହି କରକର, ହସେ ଶ୍ୟାମ ମୁଖେ ଦେଇଣ ସର । ୨୫

* ମଥୁରାପୁର ନିବାସୀ

ସୁରମ୍ୟ ମନ୍ଦିରେ ନନ୍ଦନୃପତି,   ରହିଲେ ସହ ଗୋପାଳ ସନ୍ତତି,
ପିଳାଣ୍ଡି ତହିଁ ବନ୍ଧୁ ପରଚାରେ,   ତୋଷିଲେ ତାଙ୍କୁ ନାନା ଉପଚାରେ,
ନିଶା ଅବସାନେ,   ମିଳିଲେ ସର୍ବେ କେଶବ ଯେ ସ୍ଥାନେ । ୨୬

ସମାଦରେ ତାଙ୍କୁ ପାଶେ ବସାଇ,   ମଧୁର ବଚନେ କମଳାସାଇଁ,
ପଚାରିଲେ ବ୍ରଜଧାମ କୁଶଳ,   "କହ ତାତ ! ବ୍ରଜବାର୍ତ୍ତା ସକଳ,
ହୁଏ ଉତ୍କଣ୍ଠିତ,   ଶୁଣିବାକୁ ବ୍ରଜବାର୍ତ୍ତା ମୋ ଚିତ୍ତ ।" ୨୭

ନନ୍ଦ କହେ, "ବ୍ରଜେ ନାହିଁ କୁଶଳ, ବ୍ରଜେ କଲ୍ଲୋଳେ ଖେଳେ ଶୋକଜଳ,
ତୋର ଜନନୀ ଅଶନ ଶୟନ,   ଛାଡ଼ି ନିରତେ କରନ୍ତି ରୋଦନ,
ଅରେ ପୀତବାସ !   ଏବେ ଶ୍ମଶାନ ସମ ମୋ ନିବାସ । ୨୮

ବତ୍ସ ଧେନୁ ତେଜିଲେଣି ଚରଣ,   ଗୋପବୃନ୍ଦ ତେଜିଲେଣି ଦୋହନ,
ଗୃହ ବ୍ୟାପାରେ ଗୋପୀ ଉଦାସିନୀ,   ନେତ୍ରୁ ଅଶ୍ରୁ ଝରେ ଦିବା ଯାମିନୀ,
ଦେଖି ବାଳଗଣେ,   ଚର୍ବିତ ଅକାଳ-ଜରା ଚର୍ବଣେ । ୨୯

ବିପିନେ ଖଗ ମୃଗ ବିଷାଦିତ,   ଭୃଙ୍ଗ ରୋଦନେ ବନ ଝଙ୍କାରିତ,
କାନ୍ଦେ ଯମୁନା କଳକଳ କରି,   ବ୍ରଜର ଆନନ୍ଦ-ଗୀତଲହରୀ,
ହୋଇଲାଣି ଲୀନ,   ଉଠଇ ମାତ୍ର ହାହାକାର ଧ୍ୱନି । ୩୦

ଦେଖିବାପାଇଁ ତୋ ଚନ୍ଦ୍ରବଦନେ,   ଯଶୋଦା ସିନା ଅଛନ୍ତି ଜୀବନେ,
ତୋ ବିନା ତାଙ୍କ ଅନ୍ୟ ଜ୍ଞାନ ନାହିଁ,   ଅଛନ୍ତି ତୋ ଯିବା ପଥ ସେ ଚାହିଁ,
ଅରେ ନବଘନ !   ଚାଲ ତ୍ୱରି ଫେର ବ୍ରଜଭୁବନ ।" ୩୧

କହି ଏମନ୍ତ ଶୋକେ ଗୋପବର,   ଚାଲିଲା ନେତ୍ରୁ ନୀର ଝରଝର,
କେଶବ ଚାହିଁ ଜନକ ବଦନ,   କହିଲେ ଧୀରେ କଠିନ ବଚନ,
"ବ୍ରଜକୁ ଗମନ,   କରିବା ପାଇଁ ନ ବଳେ ମୋ ମନ । ୩୨

ଯଶୋଦା ହୃଦୟ ଅଟେ ପଥର,   ମୋଠାରୁ ବଡ଼ ତାଙ୍କୁ ଦଧି ସର,
କ୍ଷୁଧାରେ ଆକୁଳ ହୋଇ ମୁଁ ଯାଇ,   କିଞ୍ଚିତ ନବଣୀ ଦଧି ଲୁଚାଇ,
କଲେକ ଭୋଜନ,   କ୍ରୋଧରେ ମୋତେ କରନ୍ତି ବନ୍ଧନ । ୩୩

ବାନ୍ଧିଣ ପିଟନ୍ତି ଦାଅନ୍ତି ଗାଳି,   ଅକୁଳେ ମୁଁ କେତେ ପାଡ଼େଁ ବୋବାଳି,
ଯେବେ ମୁଁ କ୍ଷୁଧାରେ ହୋଇ ପୀଡ଼ିତ,   ଅଣି ଖାଇଲି ମୃତ୍ତିକା କିଞ୍ଚିତ,
ଅପରାଧ ବିନା,   ମୋତେ ସେ ପିଟିଲେ ହୋଇ କଠିନା । ୩୪

ଗୋପିନୀମାନଙ୍କ ନାହିଁ ବିଚାର,   ସହୁଛି କେତେ ତାଙ୍କ ଅତ୍ୟାଚାର,
କ୍ଷୁଧିତ ହୋଇଣ ଗୋପନଗରେ,   ଯଦି ମୁଁ ଦଧି ସର ଚୋରି କରେଁ,
ଦିଅନ୍ତି ନାନା ଗାଳି,   ନିର୍ଦ୍ଦୟ-ହୃଦୟା ବରଜ-ବାଳୀ । ୩୫

ବ୍ରଜବାସିଙ୍କ ନାନା ଅତ୍ୟାଚାର,   ହୋଇଛି ମୋ ମନେ ପାଷଣଗାର,
ମୋ ନାମେ ନିନ୍ଦା ଅଣି ନାନା ରୂପେ,   ପଟିଲେ କଳଙ୍କ-ନାଗରୀ ଗୋପେ,
ଏବେ ବେଦପଥ,   ତହିଁରୁ ଦେଇଅଛନ୍ତି ମୁକତ । ୩୬

ଅବା ଗୋପାଳ-ନନ୍ଦନର କଥା,   ସ୍ମରିଲେ ମନରେ ଉପୁଜେ ବ୍ୟଥା,
ନ କର ମୋ ଅପରାଧ ବିଚାର,   କେତେ ଅଣ୍ଟେ ମୋତେ କଲା ପ୍ରହାର,
ଧୂଳିମୁଷ୍ଟି ଧରି,   କାନ୍ଦେ ହୃଦୟ ସେ କଥା ସୁମରି । ୩୭

ତୋଳି ପକ୍ୱଫଳ ବାଳକଗଣେ,   ପ୍ରଥମେ ତାହା କରି ଅସ୍ୱାଦନ,
ଦିଅନ୍ତି ମୋ କରେ ଉଚ୍ଛିଷ୍ଟ ଫଳ, କ୍ଷୁଧାରେ ମୁଁ ତାହା କରେଁ କବଳ
ମୋତେ ତୁଚ୍ଛଜ୍ଞାନ,   ମନେ କରନ୍ତି ଗୋପାଳନନ୍ଦନ । ୩୮

ହେ ପିତଃ ! ଏହି ସର୍ବ ଅତ୍ୟାଚାର,   ଶୁଣି ନ କଲ ତାର ପ୍ରତିକାର,
ଗୃହେ ତୁମ୍ଭର କି ନ ଥିଲା ଧନ,   ମୁଁ ନିତି ବନେ ରଖିଲି ଗୋଧନ,
ଚରାଇ ଗୋଧନେ,   କେତେ ବିପଦେ ମୁଁ ପଡ଼ିଲି ବନେ ।” ୩୯

ତାଳି ହଖାଟଣି ମୁଖେ ନୟନ,   ପୁଣି କେଶବ କହିଲେ ବଚନ,
“ବ୍ରଜଲୀଳା ମୋର ହୋଇଛି ଶେଷ,   ଅଉ ନ ଯିବି ଫେରି ଗୋପଦେଶ,
ହୋଇଛି ଭୂପତି,   ରଖୁଆଳପଣେ ନ ବଳେ ମତି । ୪୦

ଏଠାରେ ଲଭିଛି ସଖା ଅନେକ,   ଲଭିଛି ଜନନୀ ପୁଣି ଜନକ,
ଭୁଲି ମୁଁ ଗଲିଣି କାନନକ୍ରୀଡ଼ା,   ଯିବାକୁ ବାରକେ ଉପୁଜେ ବ୍ରୀଡ଼ା,
ନନ୍ଦଙ୍କୁ ସଙ୍ଗରେ,   ଘେନି ଯାଅ ସଖା ଗୋପ ନଗରେ ।” ୪୧

ତାଙ୍କ ଶ୍ରୁତିରେ କେଶବ ବଚନ, ପଶିଲା ଯେସନେ ବଜ୍ରପତନ,
ମୂର୍ଚ୍ଛିଣ ନୀରବାଶ୍ରୁ ଝରଝର, ଧରି ବୃଦ୍ଧ ନନ୍ଦରାଜାର କର,
ବ୍ୟଥିତହୃଦୟେ, ବାହୁଡ଼ିଲେ ବ୍ରଜେ ଗୋପତନୟେ । ୪୨
ମେଲାଣି କାଳେ କହେ ନନ୍ଦ ବାଣୀ, "ମୋ ମନେ ଥିଲା ରେ ମୁରଲୀପାଣି !
ଦେଖୁଁ ଦେଖୁଁ ତୋର ଶଶୀବଦନ, ଅନ୍ତିମରେ ମୁଦିବାକୁ ନୟନ,
ଦେଇ ରାଜପଦ, ଦେଇ ତୋତେ ଗୃହ ଧନ ସମ୍ପଦ । ୪୩
ସେ ଆଶା ସବୁ ଏବେ ତ ବିଫଳ, ବିଧି ଇଚ୍ଛାରେ ଘଟଇ ସକଳ,
ମୋତେ ଏକା ଦେଖି ତୋର ଜନନୀ, ଭଜିବେ ନିରାଶମନେ ଅବନୀ,"
କହୁଣ କାତରେ, କାନ୍ଦି ନନ୍ଦ ଗଲେ ଗୋପନଗରେ । ୪୪
ଯଥା ମଧୁକର ବସି ପଙ୍କଜେ, ଦୋଷ ବରଜି ମଧୁପାନେ ମଜେ,
ତଥା କୃଷ୍ଣକଥା-ମଧୁ ପାନରେ, ଗୀତ ଦୋଷ ବର୍ଜି ବିଦଗ୍ଧନରେ,
ଆନନ୍ଦରେ ମଜ୍ଜ, ସ୍ମର ଚିନ୍ତାମଣି ଚରଣ-ଅବ୍ଜ । ୪୫



## ଅଷ୍ଟାଦଶ ଛାନ୍ଦ

ରାଗ—କନଡ଼ା *

## କୃଷ୍ଣଙ୍କର ଚିନ୍ତା ଓ ମଥୁରୁ ଦୂତ ପ୍ରେରଣ

ନନ୍ଦଙ୍କୁ ମେଲାଣି ଦେଇ ଚକ୍ରପାଣି ଭାଳନ୍ତି ମାନସ ଆକୁଳେ । ଆହା କି କଷ୍ଟ ମୋ ବିନା ଗୋକୁଳେ । ମୋ ଭାବପିପାସୀ ବରଜ-ନିବାସୀ ହୃଦୟେ ଶୋକ ଭରିଲେ, ମୁଁ କି କଲି । କେଡ଼େ ସନ୍ତାନ-ବତ୍ସଳା ଯଶୋଦା । ଥାନ୍ତି ମଗ୍ନ ସେ ମୋ ଭାବେ ସର୍ବଦା । ତାଙ୍କୁ ବଳି କିଏ ଅଛି ସ୍ନେହମୟୀ ନନ୍ଦନ-ଆନନ୍ଦ ପ୍ରଦା, ଏ ଜଗତେ । ୧ ।

ନୟନ ତାଙ୍କର ହେଲେ ମୁଁ ଅନ୍ତର ସବୁ ହୁଏ ତାଙ୍କୁ ଗରଳ । ଗୃହେଁ ଥାନ୍ତି ମୋ ପଥକୁ କେବଳ । ଅଶନ ଶୟନ ମୋ ବେଶ ରଚନ

---

* ରସକଲ୍ଲୋଳ "କେଶବ ଅଂଶରେ ବସି ମାନସରେ" ରାଗେ

ଥିଲି ଜୀବିକା ସକଳ ଯେ । ତାଙ୍କର । ମନ୍ଥି ମନ୍ଥି ନବନୀତ ସ୍ଥବରେ । ତାହା ଦେଉଥାନ୍ତି ମୋର ମୁଖରେ । ଡାକନ୍ତି ଅଦରେ, "ଅସ ଭୁଞ୍ଜାଇବି ଅସ ମୋ ନବଣୀରଙ୍କ ରେ । ବୋଲନ୍ତି ।" ୨

କରାଇ ଭୋଜନ ମୋ ବେଶ-ସାଧନ ଅଣିଣ ପ୍ରାତେ ନନ୍ଦରାଣୀ । ମୋତେ ମଣ୍ଡନ୍ତି କରି ନାନା ଠାଣି । ସୁଖ-ସିନ୍ଧୁ ତାଙ୍କ ହୃଦୟେ ଉଛୁଳେ ଶୁଣି କରି ବାଲ୍ୟ ବାଣୀ ଯେ । ମୋହର । ଗ୍ରମ କରକୁ ଧରି ନାନା ଭଙ୍ଗେ । ଯେବେ ନାଚେ ମୁଁ ଯଶୋଦାଙ୍କ ଆଗେ । ହସ ହସ ହୋଇ କରତାଳି ଦେଇ ମୋ ବଦନ ଅନୁରାଗେ ସେ । ଚୁମ୍ବନ୍ତି ॥

ଗୋପୀଙ୍କ ପାଶରେ ହସି ହରଷରେ କରନ୍ତି ମୋ ଲୀଳା ବର୍ଣ୍ଣନ । ଯଦି ସେକାଳେ କରେ ମୁଁ ନର୍ତ୍ତନ । କହନ୍ତି ତାହାଙ୍କୁ 'ଦେଖ ମୋ ନଟକୁ' ଟାଉଣ ଦେଇ ନୟନ ଯେ । ଯଶୋଦା । ସ୍ନେହେ ଡାକନ୍ତି ଦେଇ ନାନା ନାମ । ଦୁଃଖୀସଙ୍ଗ ଲି ନୀଳପଦ୍ମଦାମ । ନଟବର କଳାଶଣୀ ନୀଳରତ୍ନ ନୟନ ପିତୁଳା ଶ୍ୟାମ ସେ । ଯଶୋଦା । ୪

ଆହା କି ମଧୁର ପ୍ରେମର ଭଣ୍ଡାର ଗୋପିକା ସରଳ ପ୍ରେମିକା । ମୋର ପ୍ରୀତ-ବନ-ମୀନ ରାଧିକା । ପାସୋରି ସକଳ ସଂସାର ଜଞ୍ଜାଳ ମୋ ପ୍ରେମ କଲେ ଜୀବିକା ସେ । ଗୋପୀଏ । ମୋତେ କରିଣ ଜାପ ତପ ଧ୍ୟାନ । ତେଜି ସମାଜ ଲଜ୍ଜା କୁଳ ମାନ । ସର୍ବାଶା ବରଜି ମୋ ପ୍ରେମରେ ମଜ୍ଜି ମଣିଲେ ଦ୍ୱନ୍ଦ୍ୱ (୧) ସମାନ ସେ । ଗୋପୀଏ । ୫

ସରଳ ହୃଦୟ ବ୍ରଜବାଳଚୟ ସରଳସଖ୍ୟର ମୂରତ । ଅନୁପମ ତାଙ୍କ ସଖ୍ୟଭକତ । ମୋ ସହ ଆହାର ମୋ ସହ ବିହାର ହୁଅଇ ସ୍ୱର୍ଗସମ୍ପତ ଯେ । ତାହାଙ୍କୁ । ମୋତେ ଭୁଞ୍ଜାନ୍ତି କରନ୍ତି ଭୋଜନ । ବନ୍ୟଭୋଜକୁ ନ ଭୁଲେ ମୋ ମନ । ବେଢ଼େ ଶ୍ରଦ୍ଧାସହ ମଣ୍ଡନ୍ତି ମୋ ଦେହ ଅଣିଣ ବନ୍ୟ ସୁମନ ଯେ । ସେମାନେ । ୬

(୧) ସୁଖ ଓ ଦୁଃଖ ।

କମଳ ବାତ୍ସଲ୍ୟ କମଳ ପୀରତି କମଳ ସୌହୃଦଅକର । ହୁଏ ମୋ ଚରିତ୍ରେ ବ୍ରଜ କାତର । ଦାରୁଣ ଉଦ୍ଦେଶ୍ୟ ସାଧନ କାରଣ କଲି ମୁଁ ଛାତି ପଥର ଯେ । କଥିରେ । ଝୁରୁଛନ୍ତି ମୋ ଯଶୋଦା ଜନନୀ । ଝୁରୁ ଅଛନ୍ତି ରାଧା ଚନ୍ଦ୍ରାନନୀ । ଝୁରନ୍ତି ନିରତେ ବ୍ରଜବାଳ ହେତେ ମୋ ବିନା ଦିବା ରଜନୀ ସେ । କଷାଦେ । ୭

କରୁଣା-ସାଗର ଯଶୋଦାକୁମର ପୁଣି ମନେ କଲେ ବିଗୁର । ଦେବ ସାନ୍ତ୍ୱନା ବ୍ରଜେ ପେଷି ଗୁର । ନୋହିଲେ ନିଷ୍ଠୁର ବ୍ରଜବାସୀଙ୍କୁ ଭୁଞ୍ଜିବେ କଷ୍ଟ ଅପାର ଯେ । ଚରିତ୍ରେ । ଚିନ୍ତି ଏମନ୍ତ କେଶବ ମନରେ । ଧୀରେ କହିଲେ ଡକାଇ ଉଦ୍ଧବେ । "ପ୍ରବଳ ଯାତନା ସହନ୍ତି ମୋ ବିନା ବରଜବାସୀ ସରବେ ହେ । ଉଦ୍ଧବ । ୮

ଗମନ ସତ୍ୱର ବ୍ରଜଧାମେ କର ଦେବାକୁ ସାନ୍ତ୍ୱନା ବରଜେ । ଯଥା ଅରୁଣ ମୋଦଇ ପଙ୍କଜେ । ମଧୁର କୋମଳ ଚତୁର ବଚନେ ଲଭିବ କୃତି ସହଜେ ହେ । ଉଦ୍ଧବ । ଯାଇ ପ୍ରଥମେ ନନ୍ଦଙ୍କ ସଦନେ । ତୋଷି ଯଶୋଦା ନନ୍ଦଙ୍କୁ ବଚନେ । ଯମୁନା ପୁଳିନେ ଗୋପୀଙ୍କି ଭେଟିବ କାନନେ ଗୋପନନ୍ଦନେ ହେ । ଉଦ୍ଧବ । ୯

କହିବ ଅଶ୍ୱାସି ବରଜବାସୀଙ୍କି ବିନୟ କୋମଳ ବଚନେ । ବହିବାକୁ ଧଇର୍ଯ୍ୟ ଧରି ମନେ । ଗଲେ କିଛିକାଳ ପାଇବେ ମୋ ମେଳ ହୋଇବେ ସୁଖୀ ମିଳନେ ଯେ । ସେମାନେ । ପୁଣି କହିବ ତାହାଙ୍କୁ ବୁଝାଇ । ତାଙ୍କୁ ରଖିଛି ମନେ ଗଣ୍ଠି ଦେଇ । କଥିର କଧାନେ ମଥୁରାଭୁବନେ ରହିଛି ବ୍ରଜେ ନ ଯାଇ ହେ । କହିବ ।" ୧୦

କେଶବଚରଣ କରେଣ ବନ୍ଦନ ଉଦ୍ଧବ ସତ୍ୱର ଗମନେ । ଯାଇ ମିଳିଲ ନନ୍ଦର ସଦନେ । ବନ୍ଦଣ ପୟର ଯଶୋଦା ନନ୍ଦର କହିଲ ମୃଦୁବଚନେ ସେ । ବିନୟେ । "ମୋତେ ଅଛନ୍ତି ପେଷି ବଂଶୀଧର । ନେଇ ଯିବାକୁ ବାରତା ବ୍ରଜର । ଦିଅ ସମାଗ୍ଭର ଯେ ଅଛି ତୁମ୍ଭଙ୍କ ବ୍ରଜୁଁ ମୁଁ ଯିବି ସତ୍ୱର ହେ । ବ୍ରଜେଶ ।" ୧୧

ଉଦ୍ଧବର ବାଣୀ ବ୍ରଜପତି ଶୁଣି କହିଲେ ଗଦ୍‌ଗଦ ବଚନେ । ବାରି ଉଚ୍ଛୁଳି ଉଠିଲା ନୟନେ । "ଅଛି କି କୁଶଳ ଅଛୁ ଏ ବ୍ରଜର ହରିଲଣି ନବଘନେ ହେ । ଉଦ୍ଧବ ! ବ୍ରଜ କୁଶଳ ଶ୍ରୀରଙ୍ଗ ସଙ୍ଗରେ । ଗଲି ଯାଇଛି ମଥୁରାନଗରେ । ହେଜଚନ୍ଦ୍ର ଝୁରି ବ୍ରଜ ନର ନାରୀ ଝୁରି ତ ଦିନ ନ ସରେ ହେ । ଉଦ୍ଧବ ! ୧୨

ହୃଦୟ ପଥର କରି ବଂଶୀଧର ରହିଛି ମଥୁରାଭୁବନେ । ଏହା ନ ଥିଲି ଭାଳି ମୁଁ ସ୍ୱପନେ । ଶ୍ୟାମଚନ୍ଦ୍ର ବିନା ଘୋର ତମ ସିନା ଘୋଟିଛି ବ୍ରଜ-ଗଗନେ ହେ । ଉଦ୍ଧବ ! ହେଲେ ପଙ୍କଜ-ନିଧି ଅପହୃତ । ବୁଡ଼େ ଜଳରେ ମୃଣାଳ ଯେମନ୍ତ । ଦୁଃଖିନୀ ଯଶୋଦା ବୁଡ଼ିଛନ୍ତି ସଦା ଶୋକ-ସଲିଳେ ତେମନ୍ତ ହେ । ଉଦ୍ଧବ ! ୧୩

ଯେହ୍ନେ ପରଭୃତ ବାୟସପାଳିତ ସମରଥ ହେଲେ ଉଡ୍ଡୀନେ । ତେଜି କାକେ ସେ ପଳାଏ ବିପିନେ । ହୋଇ ସ୍ନେହବଶ ବୃଥାରେ ବାୟସ ଲୋଡ଼େ ତାକୁ ପ୍ରତିଦିନେ ହେ । ଉଦ୍ଧବ ! ବୃଥା ଗଲି ମୁଁ କଂସସଦନକୁ । ବ୍ରଜେ ଅଣି ମୋର ନବଘନକୁ । ଅତି କଷ୍ଟେ ପଡ଼ି ଅସିଲି ବାହୁଡ଼ି ଲଭିଣ ଅପମାନକୁ ହେ । ଉଦ୍ଧବ ! ୧୪

ଯାଇଛି ତ ସବୁ ମୋର ରାଜଶିରୀ ସବୁଛି ମୋ ରାଜସମ୍ପଦ । ଗଲା ଯେ ଦିନୁ ମୋ ନବ-ନୀରଦ । ସେହି ମୋର ମାନ ଧନ ଗଉରବ ସେହି ମୋର ରାଜପଦ ହେ । ଉଦ୍ଧବ ! ଏବେ ମରୁଭୂମି ମୋର ସଦନ । ସ୍ଥାଣୁ ସମ ଏବେ ମୋର ଜୀବନ । ସ୍ୱପ୍ନେ ଜାଗରଣେ ନାଚେ ମୋ ନୟନେ ମୋ କଳାଶଶି-ବଦନ ହେ । ଉଦ୍ଧବ !" ୧୫

ବରଜମହିଷୀ ଦୋନେନାରେ ଭାସି କହିଲେ କରୁଣ ବଚନ । "କପାଁ ଫେରି ନ ଅସେ ମୋ ରତନ । ମୋ ଦୋଷ ମୁମରି ମୋତେ ପର କରି ସେ ଅଛୁ କଂସଭୁବନେ ହେ । ଉଦ୍ଧବ ! ଶ୍ୟାମ ଅଗ୍ରଜାକୁ ଭାଳି ମୋ ଚିତ୍ତ । ହୁଏ ସହସ୍ରଗୁଣେ ସନ୍ତାପିତ । କୃପାଣକ୍ଷତରେ ହୁଏ ଯେ ପ୍ରକାରେ ଲବଣକଣା ପତିତ ହେ । ଉଦ୍ଧବ ! ୧୬

ସୁତଙ୍କୁ ଶାସନ କରିବା କାରଣ କାହାର ନ ବଳେ ମାନସ । ଶଷ ରୋଗିଙ୍କ ବୈଦ୍ୟ ଦାଏ ଶଷ । ସୁତର ବଚଶ୍ରି ଅଟଇ ସେ ନାସ୍ତି ଅତ୍ୟନ୍ତ ଯେ ସ୍ନେହକରଣ ହେ । ଉଦ୍ଧବ ! କୋଳେ ପାଇବାକୁ କଳାନିଧିଙ୍କ । କେତେ ଯତ୍ନେ ମନାଇଲି ବିଧିଙ୍କ । କୃଷ୍ଣଧନେ ମୁଁ କି ମାରନ୍ତୁ ଧରନ୍ତୁ ମୋର ସେ ଉପସେନ୍ଧିଙ୍କ ହେ । ଉଦ୍ଧବ ! ୧୭

ଶୈଶବସୁଲଭ ଦୋଷରୁ କେଶବ ଦଧି ଦୁଗ୍ଧଭାଣ୍ଡ ଭାଞ୍ଜଇ । ତେଣୁ ବାତ୍ସଲ୍ୟ କୋପମୂର୍ତ୍ତି ମୁଁ ବାନ୍ଧେ । କେବେ ଦାଏଁ ଗାଲ ଦୁଏଁ କେବେ ଚଲି ତାହାକୁ ଭୟ ଦେଖାଇ ହେ । ଉଦ୍ଧବ ! କାହାପାଇଁ ମୋ ଧେନୁ ଅଗଣିତ । ଦଧି ଗୋରସ ଛେନା ନବନୀତ । ନବଣୀ-ଖିଆକୁ ତାହା ମୁଁ ନ ଦେଇ କା ପାଇଁ ଘରେ ସଞ୍ଚିତ ହେ । କହିବ ।

କାହ୍ନୁକୁ ଉଦ୍ଧବ ବୁଝାଇ କହିବ ଦେଖିବାକୁ ତାର ବଦନ । ପିଣ୍ଡେ ରହିଛୁ ମୋ ପୋଡ଼ା ଜୀବନ । ତା ଶଶିଲପନ ବିନା କାହୁଁ ଅନ୍ୟ ନ ଲୋଡ଼େ ମୋର ନୟନ ହେ । କହିବ । ତାକୁ ଦେଖି ଦେଖି କୋଳେ ବସାଇ । ଦେଇଁ ଦେଇଁ ତାକୁ ସର ଭୁଞ୍ଜାଇ । ତା ମୁଖ ଚୁମ୍ବନ କରି ମୋ ଜୀବନ ଯାଉ ତାର ଲୀଳା ଗାଇ ହେ । କହିବ । ୧୯ ।

ଯେବେଁ ମୋ ଗୋପାଳ ମଣ୍ଡିଲା ମୋ କୋଳ ତେବେଁ ବଢ଼େ ଅଣାବ୍ରତଟି । ଶ୍ୟାମ ସାଧିବ ମୋର ପ୍ରେତକୃତ । ଶ୍ୟାମଧନ ବିନା ମୁଁ ସହିବ କିନା ଶମନପୁରେ ଦୁର୍ଗତି ହେ । କହିବ । ଜଳେ ଅନ୍ତରେ ପ୍ରବଳ ବାସନା । ପୁତ୍ରବଧୂ ଶରଦଚନ୍ଦ୍ର-ବଦନା । ଶୋଭିବ ମୋ ବାସେ ଯଥା ବହ୍ୟସେ ଶୋଭେ ବିଧୁ ସଙ୍ଗେ ଜ୍ୟୋତ୍ସ୍ନା ହେ । କହିବ । ୨୦

ଯେ ଦିନୁ ମଥୁରା ଗଲା ନେଇତାର ଗୋଧନ ନ ଯାଇ କାନନେ । ତୃଣ ନ ଭକ୍ଷି ଭ୍ରମନ୍ତି ଅଙ୍ଗଣେ । ନ ଶୁଣି ଶ୍ୟାମର ବେଣୁ-ସୁଧାସ୍ୱର ନ ଦେଖି ତାକୁ ନୟନେ ହେ । କହିବ । ନାହିଁ ଗୋଷ୍ଠରେ ସୁରଭି ଦୋହନ । ନାହିଁ ସଦନରେ ଦଧିମନ୍ଥନ । ନ

ନୃଏ ପ୍ରକଟ ଗୋପଦାଣ୍ଡେ ନାଟ ନାହିଁ ବନେ ବଂଶୀସ୍ୱନ ହେ । ଉଦ୍ଧବ । ୨୧

ଅତ ଅଭାଗିନୀ ଜନମ-ଦୁଃଖିନୀ ମୁଁ ସିନା ଅଟଇଁ ଗୋକୁଳେ । ଲଭି ନୀଳ-କମଳକୁ ମୁଁ କୋଳେ । ପୁରପୁର ଭୋଗ କରି ମନ ତ୍ୟାଗ କଲି ଧନ ସୁଖଭୋଳେ ହେ । ଉଦ୍ଧବ ! ଯଥା କୃଷ୍ଣପକ୍ଷ ଅଦୀ ପ୍ରାନ୍ତରେ । ଗାଢ଼ ତମିର ଅଧିପତ୍ୟ କରେ । ତଥା ମୋ ଜୀବନ ହୋଇ ଶ୍ୟାମହୀନ ହେଉଛି ଶେଷ ଶୋକରେ ହେ । ଉଦ୍ଧବ । ୨୨

ତା ଶଶି-ବଦନ କରେ ସ୍ନେହାଧୀନ ପାଷାଣ ମନକୁ ସହଜେ । ଦେଖି ମାଥିରେ ତା ମୁଖ-ପଙ୍କଜେ । ଛଳ-ଜାଲ ଫେଡ଼ି ନ ଦାଅନ୍ତି ଛାଡ଼ି ମୋ ଧନକୁ ଏ ବରଜେ ମୁଁ । ଭାଳୁଛି । ଅତ କପଟୀ ମଧୁପୁର ଜନ । ଅଟେ ଅଜ୍ଞାନ ଶିଶୁ ମୋ ନନ୍ଦନ । କଂସର ଭଗିନୀ ହୋଇ ତା ଜନନୀ ଭୁଲାଏ ତାହାର ମନ ମୁଁ । ଶୁଣିଲି ।” ୨୩

ମୃଦୁସ୍ୱରେ ଭାଷି କହିଲେ ଅଶ୍ୱାସି ଗୋକୁଳେଶ୍ୱରୀକି ଉଦ୍ଧବ । ହେଇଁ ଅତ୍ୟନ୍ତ ଶୋକେ ସେ ନୀରବ । “ରହ କଞ୍ଜବଦନ ସ୍ଥିର କର ମନ ଦର୍ଶନ ଦେବେ କେଶବ ଗୋ । ମହିଷି ! ମଧୁନଗରେ ଛନ୍ତି ବଧୂବଶେ । ସଦା ଭାଳନ୍ତି ବ୍ରଜକୁ ମାନସେ । ନବଧୂତ ଜୀର ପରିସ୍ରେ ଅଧୀର ହୁଅନ୍ତି କଂସ ନିବାସେ ସେ । ଶଷାଦେ ।” ୨୪

ନାନାମତେ ବାଣୀ କୃଷ୍ଣ ଦୂତ ଭଣି ଦେଇଣ ତାଙ୍କୁ ଅଶ୍ୱାସନ । କଲେ ଯମୁନା ପୁଳିନେ ଗମନ । ନୀପମୂଳଦେଶେ ନଦୀଘାଟ ପାଶେ ମଉନେ କଲେ ଶୟନ ସେ । ଭୂମିରେ । ଜଣେ କୃଷ୍ଣ ଧେନୁ ମନ୍ତ୍ରି ମେଦନୀ । ଯୂଥ ଯୂଥ ହୋଇ ବ୍ରଜକାମିନୀ । ଶୋକମୟ ବେଶେ ବରସ-ମାନସେ ଅସିଲେ କଣ୍ଠ-ଗାମିନୀ ସେ । ଘାଟକୁ । ୨୫

ବଦନ ପାଣ୍ଡୁର ରୁକ୍ଷ ସୁଚକୁରଦଳ ଦୋଳେ ପୃଷ୍ଠ ଅଂଶରେ । ଶୂନ୍ୟ ଅର୍ଦ୍ଧୋଦ୍ଧୃତ ଲଲାଟ ପାଶରେ । ହୋଇଣ ଚଞ୍ଚଳ କୁଟିଳ କୁନ୍ତଳ ମୃଦୁଳ ବାୟୁ ବଶରେ ସେ । ଶୋଭଇ । ଅଛି ବରଳ ଭୂଷଣ ଅଙ୍ଗରେ ।

ନେତ୍ର ପ୍ଲାବିତ ଅଶ୍ରୁ-ଧାରଙ୍ଗରେ । କମଳ ପତ୍ରାନ୍ତେ ଶିଶିର ଯେମନ୍ତେ ଅଶ୍ରୁବିନ୍ଦୁ ଅପାଙ୍ଗରେ ଯେ । ଶୋଭିଲ ! ୨୬

ବିଷାଦେ ମଳିନ ଉଜ୍ଜ୍ୱଳବରଣ ଯେସନ ଉଷା ଶୁଭ୍ରାଙ୍ଗିନୀ । ହୁଏ ଘନାବଳୀ ଯୋଗେ ମଳିନୀ । ନାଗବଲ୍ଲୀ ରାଗ-ସୁହାସିତରଙ୍ଗ-ଶୂନ୍ୟ ଅଧରୋଷ୍ଠ ବେନି ଯେ । ତାଙ୍କର । ଅଙ୍ଗେ ଗଣ୍ଡଶିରା ଦିଏ ଦର୍ଶନ । କଣ୍ଠ ଅଶ୍ରୁ ଗନ୍ତେ କରେ ସ୍ୱଦନ । ଓଷ୍ଠ ପାଦ କର ପ୍ରୂରଙ୍ଗ-କାନ୍ତିକ କରିଛି ଗୌର ନୟନ ଯେ । ତାଙ୍କର । ୨୭

ଚିନ୍ତାକୁଳ ମନେ ଧରଣୀ ଲପନେ ସଧୀରେ ଗୁଲନ୍ତି ପୟର । ଯଥା ପଙ୍କିଳ ପଥରେ କୁଞ୍ଜର । ଗମନପ୍ରୟାସ କରେ ବାଣୀ ହ୍ରାସ ଶ୍ୱାସକୁ କରଇ ଖର ଯେ । ତାଙ୍କର । କେହୁ ମନ୍ଦନେ କରନ୍ତି ଗମନ । କେହୁ କୃଷ୍ଣକଥା କରେ କଥନ । କେ କହେ 'ହୁଁ' ବାଣୀ, କୀଟକୁ କେ ଶୁଣି ପକାଏ ବନେ ନୟନ ଯେ । ଯତନେ । ୨୮

ବ୍ରଜବାଳୀଚୟ ନେବାପାଇଁ ପୟ ନଦୀଘାଟେ ହେଲେ ମିଳିତ । ହେଲା ନେତ୍ର ଦୂରଠାରେ ପତିତ । କୋମଳହୃଦୟା ମନେ ବହୁ ଦୟା ଭାଷିଲା କେହୁ ଯୋଷିତ ଯେ । "ଦେଖ ଗୋ । ଅହା ଗୋଟିଏ ଅନାଥ-ପ୍ରବାସୀ । ନୀପ ମୂଳରେ ଶୋଇଅଛି ଅଟି । କାହିଁ ତାର ଧାମ କିସ ତାର ନାମ କପାଁ ଭ୍ରମେ ଦୁଃଖେ ଭାସି ଗୋ । ସଙ୍ଗାତ !" ୨୯

ଦୂତ ଉଠିବସି ଅମୃତ ବରଷି କହିଲା ବିନୟ ବଚନ । "କୃଷ୍ଣ-ବାର୍ତ୍ତା ମୁଁ କରଇ ବହନ । ମଥୁରା ମୋ ଧାମ ଉଦ୍ଧବ ମୋ ନାମ ଅସିଛି ବ୍ରଜଭୁବନ ଗୋ । ଗୋପୀଏ । କୃଷ୍ଣ ଗଲା ଦିନୁ ମଧୁଭୁବନ । ହୁଏ ବ୍ୟଥିତ ସଦା ତାଙ୍କ ମନ । ବ୍ରଜେ ସବୁବେଳେ ତାଙ୍କ ମନ ଖେଳେ ମେରୁରେ ଭାନୁ ଯେସନ ଗୋ । ଗୋପୀଏ ।" ୩୦

ଉଦ୍ଧବର ବାଣୀ ଗୋକୁଳ ତରୁଣୀ ଶ୍ରୁତିରେ ହୋଇଲା ପତନ । ବାୟୁ ମେଘଘୋଷ କଲା ବହନ । ଘୋର ପିପାସିନୀ ଗୃତକ-କାମିନୀ ସମୀପେ ଅଣେ ଯେସନ ହେ । ସୁଜନ ! ଅଙ୍ଗେ ଘୋଟିଲାଣି ବେଗେ

ପୂଜକ । ଯଥା ପ୍ରାବୃଟେ କଦମ୍ବକୋରକ । ଦୂତକୁ ପାଦରେ ବସାଇ ପାଶରେ ପୁଚ୍ଛିଲେ ନାଗ୍ରଭଳକ ଯେ । ବାରତା । ୩୧

ବ୍ୟଗ୍ରମାନସରେ ପ୍ରଳାନଦେଶରେ ଗୋପୀଏ ପୁଚ୍ଛିଲେ କୁଶଳ । ତାଙ୍କ ଗୂଢ ମନ ହେଲା ଚଞ୍ଚଳ । ପିପାସିତ ଜନ ତୁଅଇ ଯେସନ ଦେଖି ପାଣେ ଶୀତଜଳ ହେ । ସୁଜନ । ଛାନ୍ଦ ଦ୍ୱାତ୍ରିଂଶ ପଦରେ ପୂରଣ । ବୁଧେ ! କୃଷ୍ଣ କଥା କର ଶ୍ରବଣ । କାରଣେ ଜାଣ ତାହରେ ସ୍ମରଣ ଶ୍ରୀ ଚିନ୍ତାମଣି ଚରଣ ହେ । ସବୁଷ ! ୩୨



# ଊନବିଂଶ ଛାନ୍ଦ

ରାଗ—କୌଶିକ *

## ଗୋପୀମାନଙ୍କର ଉଦ୍ଧବ ସହିତ କଥୋପକଥନ

"କେଶେଷିଣ ଵଦ ଅହେ ବାର୍ତ୍ତାବହ ! କୁଶଳ ଗ୍ରମ ଶ୍ୟାମଙ୍କର,
ଅମ୍ଭ କଥାମାନ ସତେ କି ସ୍ମରଣ କରନ୍ତି ଯଶୋଦା କୁମର,
ଛଡ଼ା କୁସୁମେ, କେ ଜନ କରଇ ଅଦର,
କରନ୍ତୁ ଅମ୍ଭଙ୍କୁ ସେ ପଛକେ ପର କହ ତ କୁଶଳ ତାଙ୍କର । ୧
ତବ ନବରଙ୍ଗୀ ନିପୁର ପ୍ରସଙ୍ଗୀ ପ୍ରଧନ୍ୟା କୁବୁଜା ପ୍ରନ୍ଦରୀ,
ମଥୁରାମଣ୍ଡଳେ ଛନ୍ତି ଠିକ ଭଲେ ଶ୍ୟାମ ସଙ୍ଗେ ସୁଖେ ବିହରି,
ଶୁଭେ ଛନ୍ତି ତ, ମଧୁପୁର ମନ୍ତ୍ରୀ ଅକ୍ରୁର,
ତାଙ୍କ ଯୋଗୁଁ ସିନା ଅମ୍ଭ ଏ ଯାତନା ଦୁଃଖରେ ଜଳୁଛୁ ଏ ପୁର ।"୨
ବରଜରମଣୀ ଖେଦ-ଈର୍ଷା ବାଣୀ ଶୁଣିଣ ଭାଷିଲା ଉଦ୍ଧବ,
"ଏବେ ଅହରହ ବରଜ-ବିରହ-ଦହନେ ଜଳନ୍ତି କେଶବ,
କାହ କହିବ, ଗୋପୀ ଗୋ ତାଙ୍କର ଯାତନା,
ସେ ଭୁଲିଲେଣି ତ କୁସୁମ କସ୍ତୁରୀ ହେଉଛନ୍ତି ସଦା ଉନ୍ମନା । ୩

* ଉପଜକ୍ଷୋଳ "କର୍ଣ୍ଣି ମନ ଦେଇ ଶୁଣିବାବନ୍ତ ଦୋଇ" ରାଗେ

ମନ ଦୁଃଖଭାରେ   ନ ବସି ସଭାରେ   ଚରଲେ କରନ୍ତି ଅସନ,
ଯେବେ ବା କ୍ୱଚିତ   ହୁଅଇ ମୁଦ୍ରିତ   ତାଙ୍କର ପଙ୍କଜ-ନୟନ,
ନିଶି ଶେଷରେ,   ଯଦି ନିଦ୍ରା ହୁଏ ଅଳପ,
ବ୍ରଜେ ଥିଲାପରି   ବଚନ ଉଚ୍ଚାରି   ସ୍ୱପନେ କରନ୍ତି ପ୍ରଳାପ ।” ୪

ସୁଧାଂଶୁ-ବଦନୀ   ବରଜରମଣୀ   କହିଲେ, “ନ ହୁଏ ପରତେ,
ବ୍ରଜ-ସିନ୍ଧୁ-ଶଶୀ   ମଧୁପୁରେ ବସି   ସୁମରନ୍ତି ବ୍ରଜ ନିରତେ,
କିପାଁ ନ ହେବେ,   ଶ୍ୟାମଚନ୍ଦ୍ର ଚନ୍ଦ୍ର ସମାନ,
ସାଗର ଅକୂଳ   ଦେଖି ନିଶାକର   ଅସେ କି ତେଜିଣ ଗଗନ ? ୫

ବ୍ରଜେ ନାନା ଭାବ   ପ୍ରକାଶି କେଶବ   ଶବ ପରି ବ୍ରଜ ତଅଗି,
ଗଲେ ଛାଡ଼ି ବନ୍ଧୁ   ହୋଇ କୃପାସିନ୍ଧୁ   କଲେ ଗୋପିମାଙ୍କି ଅଭାଗୀ,
ସୁଧା-ବୃକ୍ଷରୁ,   ଫଳିଲା ବିଷମୟ ଫଳ,
କାହାଠାରେ ଦୋଷ   କହିବୁଁ ନିବେଶ   ଅମ୍ଭ ଭାଗ୍ୟଦୋଷ କେବଳ । ୬

ଅମ୍ଭେ ବ୍ରଜନାରୀ   ତାଙ୍କୁ ଦାସୀ ପରି   ବାଳକ କାଳରୁ ସେବିଲୁଁ,
ଏବେ ମଧୁପୁର   ହୋଇଲା ତାଙ୍କର   ଶେଷେ ଅମ୍ଭେ କେହି ନୋହିଲୁଁ,
ଯଥା ମକ୍ଷିକା,   ଅତି ଯତ୍ନେ ମଧୁ ସଞ୍ଚଇ,
ତା ମୁଖେ ଦହନ   ଦେଇ ଅନ୍ୟ ତାକୁ   ମଧୁରୁ ବଞ୍ଚିତ କରଇ । ୭

ଅମ୍ଭେ ବ୍ରଜନାରୀ   ନ ଜାଣୁଁ ଗୂଢ଼ରସ   ନ ଜାଣୁଁ କପଟ ଅଗୁର,
ଶ୍ୟାମ-ପ୍ରେମେ ମଜ୍ଜି   ନ ପାରିଲୁଁ ବୁଝି   ତାହାଙ୍କ ଛଦ୍ମ ବ୍ୟବହାର,
ମୀନ ପାଇଣ,   ସୁମଧୁର ଖାଦ୍ୟ ଯେସନ,
ଦଏ ତାହା ଗ୍ରାସି   ସତ୍ୱର ବଡ଼ଶୀ   ଆକର୍ଷି ଘେନେ ତା ଜୀବନ । ୮

କାଳିଆ ଯେତେକ   ଅତି ଅବିବେକ   ନାହିଁ ଦୟା ମାୟା ତାଙ୍କର,
ଯେଉଁ ଫୁଲେ ସ୍ନେହ   ସ୍ଥିର ରହେ କାହ   କପଟୀ କାଳିଆ ଭୃଙ୍ଗର,
କଳା କୋକିଳ,   ହୋଇଲେ ସମର୍ଥ ଉଡ୍ଡୀନେ,
କାକନୀଡ଼ ଛାଡ଼ି ଯାଏ ତ ସେ ଉଡ଼ି ବସନ୍ତ ସଙ୍ଗେ ଯେ ଶପିନେ । ୯

ଜନ ଉପହାସେ ତବ ଶିରଦେଶେ ରଖିଅଛୁଁ ସେନା କୁନ୍ତଳ,
ଖଦିର କସ୍ତୁରୀ ଅଛୁଁ ପରିହରି ନ ରଞ୍ଜୁ ନୟନେ କଜ୍ଜଳ,
ନୀଳା ବସନ, ନ କରୁଁ ପରିଧାନ ଏବେ,
ଶ୍ୟାମଙ୍କୁ କହିବ କାଳିଆ ସରିବ ଅଛୁ ଅବିଶ୍ୱାସୀ ଏ ଭବେ । ୧୦

ଯିବାକୁ ପାସୋରି ଯତ୍ନ କରି କରି ରହିଛୁଁ ପାସୋରି ନ ପାରି,
ଅମ୍ଭର ତହିଁ ତ ନାହିଁ ହେ ଅଧିତ୍ୱ ଅମ୍ଭ ମନ ଅମ୍ଭ ଭିଗାରି,
ମନ ସଙ୍ଗରେ, ମିଳିଛନ୍ତି ଶ୍ରୁତି ନୟନ,
ସ୍ୱପ୍ନ ଜାଗରଣେ ଦେଖୁଁ ଶ୍ୟାମରୂପ ଶୁଣୁଁ ତାଙ୍କ ବଂଶୀନିସ୍ୱନ । ୧୧

ମହତପୁରୁଷ ବୋଲି ତାଙ୍କ ବଶ ହୋଇ ମଲୁଁ ବୃଥା ଅଶାରେ,
ଯଥା ତୃଷାକୁଳଜନ ସିନ୍ଧୁକୂଳ ପାଇଣ ମରେ ପିପାସାରେ,
ଅବା ଯେସନେ, କରି ବଟମୂଳ ଆଶ୍ରୟ,
ଘୋର କ୍ଷୁଧାନଳ ନ ହୁଏ ଶୀତଳ ହୁଅଇ ହତାଶ ହୃଦୟ । ୧୨

ବ ଚିନେ ବ୍ରତତୀ ସୁମନସବତୀ ଛଦେ କର-କଣ୍ଟ ଆଦରେ,
ପ୍ରତଫଳ ଶେଷେ ଲଭ କରଇ ସେ ହୋଇ ଛିନ୍ନ କଣ୍ଟ-କରରେ,
ହେଲୁଁ ତେସନ, ଅମ୍ଭେ ଗୋପପୁର ଯୁବତୀ,
ତାହାଙ୍କ ଚରଣ ଆଶ୍ରୟ କରିଣ ଲଭିଅଛୁଁ ଏହି ଦୁର୍ଗତି । ୧୩

ଅମ୍ଭେ ବ୍ରଜାଙ୍ଗନା ତୁଚ୍ଛ ନାରୀ ସିନା ଜୀବିକା ଗୋରସ ବିକ୍ରୟ,
ଅମ୍ଭଙ୍କୁ କେମନ୍ତେ ଶିଝୋଇବେ ଶତେ ରାଜା ହୋଇ ନନ୍ଦତନୟ,
ନାହିଁ ସ୍ମରଣ, ଗୋରକ୍ଷଣ ବୃନ୍ଦାବନରେ,
ସେ ଗଲେଣି ଭୁଲି ପାଞ୍ଚଣ ମୁରଲୀ ନାହିଁ ଗୈରିକଦ୍ୟା ମନରେ । ୧୪

ଯେବେ ରାଧା ଲାଗି ଗୋପପୁରେ ଯୋଗୀ-ବେଶେ କରୁଥିଲେ ଭ୍ରମଣ,
ସୈରିନ୍ଧ୍ରୀ ବେଶେ ଆସି ଲକ୍ଷାରସେ ରଞ୍ଜୁଥିଲେ ରାଧା ଚରଣ,
ଏବେ ସେ କାଳ, ଯାଇଛି ତାଙ୍କର ଉଦ୍ଧବ !
କି ପାଁ ବାସ ଗୈରି କପାଁ ଭିଜ୍ଞାଇଥି ମନରେ କରିବେ କେଶବ । ୧୫

ଏବେ ତ ଦୁରନ୍ତ ବସନ୍ତ ଏକାନ୍ତ ପ୍ରାଣାନ୍ତକ ବଡ ହୋଇଛି,
ମୃଦୁଳ ଅନିଳ ପ୍ରବଳ ଗରଳ ଅନଳ ଗୁଣକୁ ବହୁଛି,
ତାଙ୍କୁ କହିବ, କଙ୍କଣ ହେଲଣି ଅଙ୍ଗଦ,
ହେଲଣି ଯମୁନା ଶତକୋଶ ସିନା ନୟନ ଶାରଦ-ନୀରଦ । ୧୬
ହେଲଣି ଭୈରବ ! ପିକବର ରବ ଅମ୍ଭଙ୍କୁ ଅଶନି ଗର୍ଜ୍ଜନ,
ଶମନ ସମାନ ନୀପତରୁମାନ କରୁଛନ୍ତି ଭୟ ସୃଜନ,
ତାଙ୍କୁ କହିବ, ଚନ୍ଦନ ହେଲଣି ଦହନ,
ହୋଇଲଣି ଭାର ବାସ ଅଳଙ୍କାର ହୋଇଲଣି ଭାର ଜୀବନ । ୧୭
ଏବେ ଅଳିବୃନ୍ଦ ପ୍ରଚୁର ମରନ୍ଦ ପାନେ ହୋଇଛନ୍ତି ମଗନ,
ନାନା ଫୁଲବଣି ଝରଇ ବକଣି କେହି ନ କରନ୍ତି ଚୟନ,
ତାଙ୍କୁ କହିବ, କମଳଦଳ କୋଶଳୟ,
ସରିଲଣି ବ୍ରଜେ ଦୁର୍ମୂଲ୍ୟ ହୁଏ ଯେ ଉଶୀର ଚନ୍ଦନ ବଳୟ । ୧୮
ବ୍ରଜେଶ ତନୁଜ ଲଭି ଉଚ୍ଚ କୁଜ-ଯୋଗ (୧) ଫଳ ମଧୁନଗରେ,
ହୋଇଣ ନିର୍ଦ୍ଦୟ ବ୍ରଜବାଳୀଚୟ ନ ରଖିଲେ ଆଉ ମନରେ,
ତାଙ୍କୁ କହିବ, କୁଜ(୨) ନାମ ନାହିଁ ଗୋପରେ,
କୁଜରେ ତାଙ୍କର ଏତେ ସମାଦର ଭାଳି ନ ଥିଲୁଁ ତ ମନରେ ।୧୯
ମଣ୍ଡନ ସାଧନ ଯେତେ ଦ୍ରବ୍ୟମାନ ହୋଇଛି ସୁଲଭ ଗୋପରେ,
ଏବେ ଗୋପୀଙ୍କର ନାହିଁ ସମାଦର ଗୃହ ବଣ ସମ ରୂପରେ,
ତାଙ୍କୁ କହିବ, ଛାଡ଼ିଣି ସକଳ ଭରସା,
ତାଙ୍କର ଚରଣ କରିଣି ଶରଣ ଶେଷରେ ଲଭିଲୁ ଦୁର୍ଦ୍ଦଶା ।୨୦
କହିବାକୁ 'ମୋର' ଜଗତ ମଧ୍ୟର ନାହିଁ ଅନ୍ୟ କେହି ଆମ୍ଭର,
ହୋଇ ଗୋପୀନାଥ ସେ କରୁଛନ୍ତି ତ ଅନାଥ ଗୋପିମାନଙ୍କର,
ତାଙ୍କୁ କହିବ, ଭସାଇଣି ଦେଲେ ଅଗ୍ନିରେ,
କେତେ ତାଙ୍କ ଯଶ କେତେ ବା ପୌରୁଷ ପ୍ରକାଶ ହୋଇବ ଜଗତେ ॥

(୧) ଉଚ୍ଚ କୁଜ-ଯୋଗ —ମକର ମଙ୍ଗଳଯୋଗ ଅର୍ଥାତ୍ ରାଜଯୋଗ
(୨) ମଙ୍ଗଳ

ଦେଖି ଜଳସଣି   ହରଷେ ପିପାସୀ   ପାଣୀ-ବାସ ପାଶେ ପ୍ରବେଶେ,
ମାନ ହୁଏ ସାର   କଲ୍ଲୋଳ-ପ୍ରହାର   ପିପାସା ବଢ଼ଇ ବିଶେଷେ,
ସେହୁ ହିମାନ,   ଦୟାରେ ତ ନନ୍ଦକୁମର,
ଭୁଲିଲଣି ଏବେ ତେଣୁ ତାଙ୍କୁ ସର୍ବେ କହନ୍ତି ଦୟାର ସାଗର । ୨୨
ଯେ ଜନ ମହତ   ନ ହୁଏ ବିସ୍ମୃତ   ପୂର୍ବକଥା ଲଭି ଉନ୍ନତ,
ତା ମହତ୍ତ୍ୱ ଗୁଣ   ବଢ଼େ ଉଠେ ପୁଣି   ବଢ଼ିଣି ଉଠଇ ତା ନତ,
ଦେଖ ଉଦ୍ଧବ !   ବଟତରୁ ଯେତେ ବଢ଼ଇ,
ତାର ଶାଖାମାନ ତେତେ ଛାୟାଦାନ ଦେଇ କ୍ରମେ ଝୁଲି ପଡ଼ଇ ।୨୩
ତେଜିଣ କମଳ   ବନ୍ଧୁ ଯାଏ ଜଳ   କମଳ ନ ତେଜେ ଜଳକୁ,
ଗମେ ଉତୁପତ ଛାଡ଼ିଣ ବ୍ରତତୀ ଶଶୀ ତେଜେ ତାରକୁଳକୁ,
ବଡଲୋକର,   ସବୁ ଶୋଭା ସିନା ମହତର,
ଯଦି ଗଳାହାର ହେବ ବିଷଧର କାହାର ଅଯୁକ୍ତ ତହିଁରେ ।” ୨୪
ବରଜସୁନ୍ଦରୀ   ଅଶ୍ରୁ ମୁଞ୍ଚି କରି   କହୁଁ କହୁଁ ହେଲେ ନୀରବ,
ଦେଖି ତାଙ୍କ ଶୋକ   ହୋଇଣ ଉତ୍ସୁକ   ସଦୟ-ହୃଦୟ ଉଦ୍ଧବ,
ଧୀରେ କହିଲେ,   ଶୁଣ ମୋର ଧ୍ରୁବ ବଚନ,
“କିଛି କାଳ ପରେ   ଭାସିବ ସୁଖରେ   ଲଭିଣି ଯଶୋଦା-ନନ୍ଦନ ।”୨୫
ଦେଇ ଆଶ୍ୱାସନା   ଗୋପିଙ୍କି ଯମୁନା-ତଟ ପରିହରି ଉଦ୍ଧବ,
ଚନ୍ଦ୍ରସେଣୀପୁର   ଗମିଲେ ସତ୍ୱର   ଚିତ୍ତରେ ସୁମରି କେଶବ,
ଦ୍ୱାରଦେଶରେ,   ଦେଖି କୁଟିଳାକୁ (୩) ନୟନେ,
ରାଧା ଦରଶନ ପାଇଁ ନିବେଦନ କଲେ ସେ ବିନୟବଚନେ । ୨୬
“କେଉଁଠାରେ ବାସ ନାମ ତୋର କିସ ପୁଚ୍ଛିଲେ କୁଟିଳା କର୍କଶେ,
କିପାଇଁ ଅସିଛୁ   କିପାଇଁ ବା ଇଚ୍ଛୁ   ରାଧା ଦରଶନ ମାନସେ ?”
ଶୁଣି ତା ବାଣୀ,   କୋମଳେ କହିଲେ ଉଦ୍ଧବ,
“ରାଧା ସମାଚାର ନେବା ପାଇଁ ଗୁର କହିଛନ୍ତି ମୋତେ କେଶବ ।”୨୭

(୩) ରାଧାର ନଣନ୍ଦ

ସେ ଯମଘଞ୍ଜଡ଼ା[୪] ପରଘରବୁଡ଼ା[୫] ଧର୍ମଛଡ଼ା[୬] ଗୋପଶଠଳା[୭]
ନାହିଁ ଲଜ୍ଜା ତାର ପଠାଇଛି ଗୁରୁ ଶଙ୍ଖ ଯା ପାନ ସେ ନ କଲା,
ପୁଣି ହାଟ କ, ବସାଇବ ଗୋପନଗରେ,"
କହୁଣ ଏତେକ ଜନନୀ କଡକ ଧାଇଁଲ କୁଟିଳା ବେଗରେ । ୨୮
ପୁଣି ଦ୍ୱାରଦେଶେ ଅସି ଅତ ବେଗେ କୁଟିଳା କମ୍ପାଇ ଆନନ,
ଘୂରାଇଣ ନେତ୍ର ଗୁଳି କରପତ୍ର କହିଲା ସକ୍ରୋଧ ବଚନ,
"ଗୁରୁ ! ନ ହେବ, ନ ହେବ ତୋ କାର୍ଯ୍ୟ ସଫଳ,
ରାଧା କଳଙ୍କିନୀ ଲମ୍ପଟ ଅବନୀ ତା ଅଙ୍ଗରେ ନାହିଁ କୁଶଳ । ୨୯
ହୋଇ ନିର୍ବାସିତ ନନ୍ଦରାଜସୁତ ତେବେହେଁ ସ୍ୱଭାବ ନ ଛାଡ଼େ,
ଗଲେହେଁ ଶ୍ମଶାନ ଯଥା ମନ୍ଦଜନ ପ୍ରମାଦ ଜନପଦେ ପାଡ଼େ,
ରାଧା ପାସୋର, ନ ଯାଉଛି ତାର ମନରୁ,
ଧନ୍ୟ ରାଜା କଂସ ଚଣ୍ଡା ଗୋପଦେଶ କଲା ସର୍ବନାଶୀ ଭୟରୁ ।୩୦
ସେ ବାଙ୍କଚୂଳିଆ ଅଟେ କୁହୁକିଆ ଜାଣେ ସେ ମୋହନ ମନ୍ତ୍ର,
ବିଧାତା ଜାଣିଛି କି ମନ୍ତ୍ରରେ ସେହି ମୋହିଲା ବ୍ରଜ ନିରନ୍ତର,
ଶୁଣି ତା ବେଣୁ, ନ ରହନ୍ତି ଘରେ ଗୋପିନୀ,
ଜାଙ୍ଗଳିକ ଗୀତ ଶୁଣିଣ ଯେମନ୍ତ ତେଜନ୍ତି ବିବର ଭୋଗିନୀ । ୩୧
ମୁଁ ଭାଳୁଛି ମନେ ନନ୍ଦର ସଦନେ ହୋଇଛି ଅଜର[୯] ଜନମ,
ଆସି ଚୋପଦେଶ କଲା ସେ ବିନାଶ ଗୋପୀଙ୍କ ଧରମ କରମ[୧୦]
ନନ୍ଦନନ୍ଦନ, ଅଟଇ ସଂସାରବିନାଶୀ[୧୧]
ତାର ଦର୍ଶନେ ନ ଚଢ଼ି ମୋହନେ କେ ନ ହୁଏ ଗୃହ-ଉଦାସୀ ।୩୨

---

(୪) ଭୂରୂପ ବା ଯମ ଭୟ ନିବାରକ । (୫) ମନ୍ଦଲୋକ ବା କାମକ୍ରୋଧାଦି ଶତ୍ରୁମାନଙ୍କର ଉଚ୍ଛେଦକ । (୬) ପାପୀ ବା ବର୍ଣ୍ଣାଶ୍ରମାଦି ଧର୍ମ ନାହିଁ ଯାହାର । (୭) ଗୋକୁଳଘନକାରୀ ଲମ୍ପଟ ବା ମଙ୍ଗଳ ଓ ଗୋବର୍ଦ୍ଧନ ଗିରି ଉତ୍ପାଟକ । (୮) ମନବ୍ୟକ୍ତି ବା ମୁକ୍ତିଦାତା । (୯) ଈଶ ବା ଭଗବାନ । (୧୦) ହୋମ ଯାଗାଦି କାର୍ଯ୍ୟ । (୧୧) ଯେ ସମସ୍ତଙ୍କର ଅମଙ୍ଗଳ କରେ ବା ଯେ ସଂସାରରୁ ମୁକ୍ତିଦିଏ ।

ମୁଁ ଅତି ସିହାଣୀ ତେଣୁ ସିନା ଶକ୍ତି ଅଛି ତାକୁ ଗୋପ ନଗରେ,
ତା ମନ୍ତ୍ର ସକଳ ହୁଏଟି ବିଫଳ ପଡ଼ିଲେ କୁଟିଳା ଆଗରେ,
କେତେ ରଙ୍ଗ ସେ, କରଅଛି ଏହି ଗୃହରେ,
କୁଟିଳା କି ପୁଣି ତାର ଗୁର ବାଣୀ ଶୁଣିଣ ପଡ଼ିବ ମୋହରେ ? ୩୩
ସେ ନନ୍ଦତନୁଜ ଅଟଇ ନିର୍ଲ୍ଲଜ ସତେ କି ବଗ୍ରଡୀ୧୨ କୁକୁର୧୩,
ଯେତେ କଲେ ମନା ଦଲେହେଁ ଭର୍ତ୍ସନା ନ ଛାଡ଼େ ଗୃହକୁ ଆମ୍ଭର,
ସେ ତ ସତତ, କୁକଥା୧୪ କରଇ ମନରେ,
ଯେ ତାର ବଳୁଛି କହେ ପଦେ ଅଧେ ତା ନାକ୧୫ ନାଶ ଇଚ୍ଛା କରେ । ୩୪
ମାୟାମୟୀ୧୬ ଗ୍ରଣି ସେ ମାୟାବୀ୧୭ ପାଇଁ ସହିଅଛି ଯେତେ ଲାଞ୍ଛନା
ତାକୁ ଭଲ ଭଲ ଦେହ କରି କାଳି ହୋଇଲାଣି ଅର୍ଦ୍ଧଜୀବନା,
ତାର ଶକତ, ନାହିଁ କହିବାକୁ ବଚନ,
ଦରଶନ ତାର ନ ଘଟିବ ଗୁର ଫେରି ଦେଶେ କର ଗମନ । ୩୫
ସେ ଖେଚର-ଗୁରୁ୧୮ ଯିବାରୁ ଏ ପୁରୁ ପଡ଼ିଛି ଏ ଭୂମି ଶୀତଳ,
ନାହିଁ ବାସଗୃହ ନାହିଁ ଦଧିଗୃହ ନାହିଁ ଗୋପେ ଗୃହ ଚହଳ,
କରେ ସେ କେତେ, ମୃଗଭଙ୍ଗୀ ମୋର ଆଗରେ,
ତାର ଲଜ୍ଜା ନାହିଁ ଯେତେ କରେ ଛାଡ଼ି ଯେତେ ଗାଳି ଦିଏ ଗ୍ରଗରେ ।”
ଦୂତ ଉଦ୍ଧବେ ଶୋ ସେ କାଳରେ ଦେଖା ଦେଇ କୁଟିଳାକୁ ଖ୍ରିପିଲେ,
ଅଟେ ସଦାଗ୍ରର ଶାସ୍ତ୍ରର ବଗ୍ରର ସମୀପକୁ ଗୁର ଅସିଲେ,
ଯେମା ! କିପାଇଁ, ବୃଥା ଶଙ୍କା କର ମନରେ,
ବଳହୀନା ଗ୍ରଣି ଯିବ କି ପଳାଇ ଗୁର ସଙ୍ଗେ ମଧୁନଗରେ ? ୩୭
ଉଦ୍ଧବକୁ ଘେନି ସଙ୍ଗେ ସଖୀ ବେନି ଅନ୍ତଃପୁରେ କଲେ ଗମନ,

(୧୨) ମାର୍ଜାର ବା ଗରୁଡ଼ର ପ୍ରଭୁ । (୧୩) ଶ୍ୱାନ ବା ଜଗତର ଆଧାର । (୧୪) ମନ୍ଦକଥା ବା ସଂସାରର କଥା । (୧୫) ନାସିକା ବା ସ୍ୱର୍ଗ । (୧୬) କୁଟିଳସ୍ୱଭାବା ବା ପ୍ରକୃତିରୂପିଣୀ । (୧୭) କୁଟିଳସ୍ୱଭାବ ବା ମାୟାଧର । (୧୮) ମନ୍ଦସ୍ୱଭାବ ବଣିଷ୍ଠ ବା ଗରୁଡ଼ ପତି ।

ହୋଇଲେ ପ୍ରବେଶ ଯହିଁ ଗୋପିନୀଗଣ ଧରାତଳେ କରେ ଶୟନ,
ରଖି ମସ୍ତକ, କୃଶବାହୁ-ଉପାଧାନରେ,
ମୁଦ୍ରିତ ନୟନ କୋଣେ ବିସର୍ଜ୍ଜନ ଝରଇ ଅଶ୍ରୁ ସଘନରେ । ୩୮
ରାଧା ବେନି ସଖି ରାଧା ଦଶା ଦେଖି ସାଶ୍ରୁନୟନରେ ଭାଷିଲେ,
“ଅଟେ କି କଠିନ ଘନଶ୍ୟାମ ମନ ବାରେ ବ୍ରଜକୁ ନ ଆସିଲେ,
ତାଙ୍କ ବିରହେ, ଘଟିବ ରାଧାର ମରଣ,”
ଗୀତ ହେଲା ଶେଷ ଚିତ୍ତେ ସୁମନସ ଭାଳ ଚିନ୍ତାମଣି ଚରଣ । ୩୯



## ବିଂଶ ଛାନ୍ଦ

ରାଗ—ସାରଙ୍ଗ *

### ରାଧା ସହିତ ଉଦ୍ଧବର ସାକ୍ଷାତ

ରାଧା ମୁଖ ଚାହିଁ ଦୂତୀ କହିଲା କୋମଳେ,
“କେତେ କାନ୍ଦୁଅଛ ଅହା ପଡ଼ିଣ ଭୂତଳେ,
ଉଠ ଶ୍ୟାମ ବିମୋହିନୀ !
ଉଠ ଉଠ ଅଶ୍ରୁମୟୀ ହେଲାଣି ଅବନୀ । ୧

କାନ୍ଦି କାନ୍ଦି ଝୁରି ଝୁରି ହୋଇଲଣି ସାରା,
କେବେ ବନ୍ଧ ଶୁଖାଇବ ଏ ନୟନଧାରା,
ଉଠ ନୋହି ଶୋକାକୁଳା,
କୃଷ୍ଣ ପେଷିଛନ୍ତି ଦୂତ କର ଗୋ ସଙ୍ଗୁଳା ।” ୨

ଫେଡ଼ିଲା ନୟନ ରାଧା ଦୂତୀର ବଚନେ,
ଜାଗିଲା କି ପଦ୍ମ ବେନି ଉଷା ସମ୍ବୋଧନେ,
ଦେଖି ଉଦ୍ଧବକୁ ପାଶେ,
ଶିର କଲା ନତ ବସି ମୁଖ ଢାଙ୍କି ବାସେ । ୩

* ବଦନ୍ତୁ ଚିନ୍ତାମଣି “ଦୂତୀ କର ଧର ଦର ବୋଇଲେ ଯଶୋଦା” ରାଗେ

ରାଧାର ଇଙ୍ଗିତ ପାଇ ତ୍ୱରା ସଖୀମାନେ,
ତୋଷିଲେ କେଶବ ଦୂତେ ସମାଦର ଦାନେ,
ଅଣି ଚର୍ବିତ ଅଶନ,
ତାମ୍ବୂଳ-ବାଟିକା-ପୂର୍ଣ୍ଣ ପାତ୍ରକୁ ବନ୍ଦନ । ୪

ଦୂତାଗମ ହେଲା କ୍ଷଣେ ଶୋକ ଅପସାର,
ମଧୁରେ ପୁଚ୍ଛିଲେ ରାଧା ପୋଛି ନେତ୍ରବାର,
"ଶୁଭେ ଛନ୍ତି ଟିକି ଶ୍ୟାମ ?
ହେଉଛି ତ ସୁଖକର ତାଙ୍କୁ ମଧୁଧାମ ? ୫

କୃଶତା ତ ଲଭିନାହିଁ ନୀଳ କଳେବର ?
ମିଳେ ତ ପ୍ରଚୁର ମଧୁପୁରେ ଦଧି ସର ?
କରେ ମୁରଲୀ ଅଛି ତ ?
ଚନ୍ଦନ କସ୍ତୁରୀ ଫୁଲ ମଣ୍ଡି ହୁଅନ୍ତି ତ ?" ୬

ଉଦ୍ଧବ କହିଲ ଶୁଣ, "ବ୍ରଜବଧୂ-ବର !
ବ୍ୟାକୁଳ ସତତ ଯଥା ହୁଅଇ ଭ୍ରମର,
ପଦ୍ମବନକୁ ହରାଇ,
ବ୍ରଜ ବିନା ତଥା ସିନା ବ୍ରଜର କହ୍ନାଇ । ୭

ଭୋଗ୍ୟବସ୍ତୁମାନ ଏବେ ତାହାଙ୍କୁ ଗରଳ,
ବ୍ରଜକଥାମାନ ସେ ତ ଭାଳନ୍ତି କେବଳ,
ବ୍ରଜଧାମ ସମାଚାର,
ତାଙ୍କୁ ହେବ ସିନା ଯଥା ମରୁକୁ ଆସାର ।" ୮

ଉତ୍ଫୁଲ୍ଲ ପ୍ରସନ୍ନ କ୍ରମେ ହେଲା ରାଧା ମୁଖ,
ଅରୁଣକରରୁ ପାଇ ଦିନେଶ ମୟୂଖ,
ଯଥା ଉଷାର ବଦନ,
ତିମିର କାଳିମା ତେଜି ହୁଏ ଶୋଭାବନ । ୯

ସୁଧାକରବିମ୍ବୁଁ ଯଥା ଝରଇ କିରଣ,
ପ୍ରକାଶିଲେ ରାଧା ତଥା କରୁଣ ବଚନ,
"ଦୂତ ! ମନ୍ଦୁଅଛୁଁ ଝୁରି,
ବଂଶୀଧର ଗଲ ଦିନୁ ଛାଡ଼ି ଗୋପପୁରୀ । ୧୦

ନଦୀତୀରେ ଶିବ ପୂଜି ମନାଇ ମାନସେ,
ପାଇଥିଲୁଁ ତାଙ୍କୁ କରେ ସଜଭାଗ୍ୟବଶେ,
ଏବେ ହୋଉଅଛୁଁ ଅକୁଳ,
ଫଳିଅଛି ଦୂତ ! ଅସ୍ମ ଶିବତପ ଫଳ । ୧୧

ଶ୍ୟାମ ମହାଧନେ ଧନୀ ଥିଲୁଁ ଏକ ଦିନ,
ହରାଇ ସେ ଧନ ଏବେ ହୋଇଅଛୁଁ ଦୀନ,
ଭଲ ଚିରଦରିଦ୍ରତା,
ଧନୀଙ୍କ ଅସହ୍ୟ ସିନା ଭୀଷଣ ଦୀନତା । ୧୨

ଶ୍ୟାମପ୍ରେମ-ପିପାସାରେ ହୋଇଣ ଅକୁଳ,
ସରଳ-ହୃଦୟବଶେ ବ୍ରଜବଧୂକୁଳ,
ତେଜି ଲଜ୍ଜା ଭୟ କୁଳ,
ତାଙ୍କ ଦାସୀ ହେବା ପାଇଁ ହେଲୁଁ ତ ବାତୁଳ । ୧୩

ଅମ୍ଭେ ଅଟୁଁ ଗୋପନାରୀ ନ ଜାଣୁ କପଟ,
ସେବିଲୁଁ ସରଳମନେ ବ୍ରଜଧାମନଟ,
ଶଠ ଷଟପଦାଗ୍ରର,
ପ୍ରକାଶି ତେଜିଲେ ସେ ତ ଗୋପବଧୂବାର । ୧୪

ଦୟାଳୁ ଅଶରୀ କେବେ ତେଜେ କି ଆଶ୍ରିତେ,
ଦୟାସିନ୍ଧୁ ଗଲେ ଛାଡ଼ି ଶିଳାମୟ ଚିତ୍ତେ,
କିସ ଅବସ୍ଥା ଅପୂର୍ବ,
ଯଦି ତସ୍ୱୀ କରେ ତାକୁ ଦ୍ରୁତ-ସ୍ରୋତ-ଗତ । ୧୫

ଭୌମ୍ୟଦାଙ୍କ ତେଜ ନଭେ ଗମେ କି ସିତାଂଶୁ ?
ତେଜି କି ଚପଳା ଘନ ପଳାଏ ଅନ୍ତାଶୁଁ ?
ତେଜ ପ୍ରଭା ପ୍ରଭାକର,
ଗଗନ-ଅଙ୍ଗଣୁଁ କେବେ ହୁଏ କି ଅନ୍ତର ! ୧୬

କଣ୍ଠ ଶିରେ ଯାଙ୍କେ ଝୁର ପଡ଼ିଲେ ସୁମନା,
ତାଙ୍କୁ ଘେନ କଣ୍ଠ ବନେ ଭ୍ରମୁଥାଏ ସିନା,
ଶ୍ୟାମ କେଉଁ ଦୋଷ ଦେଖି,
ଏକା ସେବକାଙ୍କ ଦୂତ ! ଗଲେ ସେ ଉପେକ୍ଷି । ୧୭

ସ୍ୱଭାବେ ପୁରୁଷଜାତ କଠିନ ହୃଦୟ,
ଦେଖ ବିନାଶଇ ଭାନୁ ପଦ୍ମ-ବାସ ପୟ,
ତାକୁ ଲୋଟାଏ କର୍ଦ୍ଦମେ,
ତେବେହେଁ ତ ହାସ୍ୟମୁଖୀ ପଦ୍ମ ଦିନାଗମେ । ୧୮

ତୃଷିତା ଚାତକୀ ମୁଖେ ଦୟା ଛାଡ଼ି ଘନ,
ବାରି ସହ ଢାଳିଦିଏ ବିଷମ ଦହନ,
ଦୂତ ! ଅମ୍ଭଙ୍କୁ ସେପରି,
ଛଳେ ସିନା ନବଘନ ଦୟା ପରିହରି । ୧୯

ଶ୍ୟାମ-ପ୍ରୀତ ଲଭ ଲୋଭେ ତେଜିଲୁଁ ସକଳ,
ତାଙ୍କ ପାଦପଦ୍ମ କଲୁଁ ଜୀବନସମ୍ବଳ,
ଏହା ନ ଥିଲୁଁ ତ ଜାଣି,
ଦାରୁଣ-ହୃଦୟ ଦିନେ ହେବେ ବେଣୁପାଣି । ୨୦

କପଟରେ ଛଣ୍ଟ ଦେଇ ଗଲେ ଦିନ ଗୁରୁ,
ଏତେ ସବୁ କରିବାକୁ ଥିଲେ କି ଚତୁର,
ହେଲ ବାରିନିଧି ପରି,
ବକ୍ଷ ସୁଧାମୟ-ହୃଦ ଗରଳ ଉଗାରି । ୨୧

ଦାସୀ ଯେଣୁ ଦୋଷୀ ତେଣୁ ବନ୍ଧୁ କ୍ଷମାସିନ୍ଧୁ,
ମାଗୁଛି ଅପରାଧିନୀ କ୍ଷମା ଏକ ବିନ୍ଦୁ,
ବନ୍ଧୁ ରାଜୀବ-ଚରଣ,
ଭବ ଭୀଳ ନୂପୁର କି ନ କରେ ବନ୍ଧନ । ୨୨
ଜୀବନ-ଅଲୋକ ମୋର ଶେଷ ପରି ଅସି,
ଦେଖି ନ ପାରିବି ବନ୍ଧୁ ମୁଖ-ପୂର୍ଣଶଶି,"
ରାଧା କହୁଣି ଏତିକି,
କାନ୍ଦିଲେ ନୀରବେ ଲଭି ଚରଣସ୍ଥ ଡିକି । ୨୩
କାନ୍ଦିଲେ ଅକୁଳେ ରାଧା କାନ୍ଦିଲେ ନୀରବେ,
ସମ ବେଦନାରେ ମଗ୍ନି ସହଚରୀ ସର୍ବେ,
ଦୀର୍ଘ ନିଶ୍ୱାସ ପକାଇ,
ରାଧା ନେତ୍ର ବାସେ ପୋଛି କହିଲେ ବୁଝାଇ । ୨୪
"ନ ହୁଅ ଅଧୀର ରାଧେ !" କହିଲି ଉଦ୍ଧବ,
"ଧର ଧୈର୍ଯ୍ୟ ପୁଣି ତୁମ୍ଭେ ଲଭିବ କେଶବ,
ସତ୍ୟ ସତ୍ୟ ମୋର ବାଣୀ,"
ଏବିଧି ସାନ୍ତ୍ୱନା ଦେଇ ନେଲେ ମେଲାଣି । ୨୫
ରାଧାଶୋକ ଦୃଢ-ଗଦ୍ଗଦ ପରିହରି,
ଗଲେ ବୃନ୍ଦାବନଧାମେ ସଧୀରେ ସଞ୍ଚରି,
ବୁଧେ ! କୃଷ୍ଣରସେ ମଜ୍ଜି,
ଭଜ ଚିନ୍ତା ଚିନ୍ତାମଣି ଚରଣ-ପଙ୍କଜ । ୨୬



## ଏକତ୍ରିଂଶ ଛାନ୍ଦ

ରାଗ—ବସନ୍ତ

**ଉଦ୍ଧବ ସହିତ ବ୍ରଜବାଳକମାନଙ୍କର ସାକ୍ଷାତ**

ଉଦ୍ଧବ ସଧୀରେ ଗତ କଲେ ବୃନ୍ଦାବନେ,
ଯହିଁ ଧେନୁ ରଖିଥିଲେ ବ୍ରଜନନ୍ଦନେ । ୧

ଅତ୍ୟନ୍ତ ଭୟରେ ଦେଖି ସେମାନେ ଚିହ୍ନିବେ,
'ଅସେ ଧରି ନେବ' କହୁ ପଳାଇଲେ ସର୍ବେ । ୨
କେହୁ କହେ, "ଏ ତ ଅସେ କଂସର ଡଗର,
ଅମ୍ଭଙ୍କୁ ସେ ଧରି ନେବ ମଥୁରା ନଗର ।" ୩
କେହୁ କହେ, "କଂସାସୁର ଗଲାଣି ତ ନାଶ,
ମଧୁପୁରେ ରାଜା ଏବେ ଅମ୍ଭ ପୀତବାସ ।" ୪
କେହୁ କହେ, "ଏବେ କାହ୍ନୁ ନୁହନ୍ତି ଅମ୍ଭର,
ମଧୁପୁରେ ଦେଖିଛ ତ ତାଙ୍କ ବ୍ୟବହାର । ୫
ବସି ସିଂହାସନେ ସେ ତ ଗଲେଣି ବଦଳି,
ଅବିଶ୍ୱାସୀ ଜଗତରେ ରାଜାଙ୍କୁ କେ ବଳି ?" ୬
କେହୁ କହେ, "କିପାଁ କାନେ ପାଇଲେ ଭଳାତ,
ସ୍ୱତପନ୍ତୁ ପୂର୍ବ କଥା ପୋଛୁଣ ଦିଅନ୍ତି ?" ୭
ଉତ୍ତରେ କେ କହେ, "ଗିରି ଭଲେ ଅନ୍ୱେଷଣ,
ଶୈଳପାଦ-ପାଦପରେ ପଡ଼େ କି ନୟନ ? ୮
ହୁଅଇ ଦୃଷ୍ଟିତ ଶିର ରଷ୍ଟୁ ହୁଏ ବୁଦ୍ଧି,
ଗତାଗତ ବର୍ତ୍ତମାନ ନ ପାରନ୍ତି ବୁଝି ।" ୯
କେହୁ କହେ, "ଏ ଆ ଅସେ ମାୟାବୀ ଅସୁର,
କେ ରକ୍ଷା କରିବ ଶ୍ୟାମ ଛନ୍ତି ମଧୁପୁର ? ୧୦
ଶ୍ୟାମ ବିନା ଆଜି କିଏ କରିବ ଉଦ୍ଧାର,
ନାନା ବିପଦରୁ ଏବେ ବ୍ରଜବାଳବାର ।" ୧୧
କେ କହେ, "ଅମ୍ଭଙ୍କୁ ନେଲେ ମଧୁପୁରେ ଧରି,
ହେବା ସୁଖୀ ତହିଁ ଶ୍ୟାମ ମୁଖ ଦେଖି କରି । ୧୨
ରଖିବେ ଅମ୍ଭଙ୍କୁ ଶ୍ୟାମ ଯଦି କାରାଗାରେ,
ଭୁଞ୍ଜିବା ଅଧିକ ସୁଖ ରହିଣ ସେଠାରେ ।" ୧୩
କୁହା କୁହି ଏହିପରି ହେଉଁ ବ୍ରଜବାଳେ,
ଉଚ୍ଚସ୍ୱରେ ଡାକ ଦେଲା ଉଦ୍ଧବ ସେକାଳେ । ୧୪

"ଭୟ ନାହିଁ, ରହ ରହ, କମ୍ପ କର ଭୟ ?"
ତାହା ଶୁଣି ସ୍ଥିର ହେଲେ ବାଳକନିଚୟ । ୧୫
ଧୀରେ ଧୀରେ ଭୟେ ଭୟେ ଗୋପସୁତେ ଆସି,
'ନିକଟେ ଯିବାକୁ ଭୟ ମାଡୁଅଛୁ' ଭାଷି । ୧୬
ଉଦ୍ଧବ ଆଶ୍ୱାସେ ହେଲେ ଧୀରେ ଅଗ୍ରସର,
ପୁଣି ସନ୍ଦେହରେ ଗଲେ ପଳାଇ ସତ୍ୱର । ୧୭
କେ କହେ, "ମାୟାବୀ ରକ୍ଷେ ଅଟନ୍ତି ଚତୁର,
ଅଛୁ ମନେ ଯାହା କଲା ପ୍ରଳମ୍ବ ଅସୁର ।" ୧୮
ଉଦ୍ଧବ ଡାକିଲ ପୁଣି, "ନ କର ହେ ଭୟ,
ଶୁଣ ମୋର କଥା ବାରେ ମନ କରି ଥୟ ।" ୧୯
ଉଦ୍ଧବ ବଚନେ ପୁଣି ବ୍ରଜବାଳମାନ,
କହୁଲେ, "ପକାଅ ତୁମ୍ଭ ପିତା ମାତା ଆନ । ୨୦
ଧରି ତ ନ ନେବ ଅମ୍ଭେ ଗଲେ ତୁମ୍ଭ ପାଶ,
କେ ରଖିବ ନାହାନ୍ତି ତ ପାଶେ ପୀତବାସ ।" ୨୧
ଉଦ୍ଧବ ଶପଥ କରି ଦେବାରୁ ଆଶ୍ୱାସ,
ବାଳକେ ଆସିଲେ ପାଶେ ନ କରଣ ତ୍ରାସ । ୨୨
ଛୁଡ଼ା ହେଲେ ଦୂତ ପାଶେ ଭୟ ରଖି ଚିତ୍ତେ,
ବୋଇଲେ, "ଆସିଛ କପାଁ ବୋଲ ହେ ତ୍ୱରିତେ । ୨୩
କହ ବେଗେ ବିଳମ୍ବ ନ କରିବୁଁ ଏଠାରେ,
ଏଣେ ତେଣେ ଧେନୁଗଣ ପଶିବେ କାନ୍ତାରେ ।" ୨୪
କହିଲ ଉଦ୍ଧବ, "ଅଜ ତୁମ୍ଭ ସମାଚାର,
ନେବା ପାଇଁ ମଧୁପୁରୁଁ ଆସିଛୁ ମୁଁ ଚର । ୨୫
ତୁମ୍ଭ ରଖୁଆଳ ରାଜା ଛନ୍ତି ମୋତେ ପେଷି,
ଦିଅ ବାର୍ତ୍ତା ମୋ କଥାରେ ମାନସ ନିବେଶି ।" ୨୬
ବାଳକଗଣଙ୍କୁ ଏହା କହନ୍ତେ ଉଦ୍ଧବ,
ପାଇଲେ କି ଗୋପସୁତେ ବାସବ ବିଭବ । ୨୭

ଉଦ୍ଧବ ମୁଖକୁ ଶୁଣି ବରଜନନ୍ଦନେ,
ପୃଚ୍ଛିଲେ କୁଶଳବାର୍ତ୍ତା କୋମଳ ବଚନେ । ୨୮
"ତୁମ୍ଭ ବନ୍ଧୁ କହ ଦୂତ ! ଛନ୍ତି ତ କୁଶଳେ,
ରଖିଥିଲ ରାଜା କାହ୍ନୁ ମଥୁରାମଣ୍ଡଳେ ? ୨୯
ନାହାନ୍ତି ତ ମଧୁପୁରେ ପ୍ରଭୂତ ଗୋଧନ,
ଅମ୍ଭ ରାଜା ଛାଡ଼ିଥିବେ ଗୋରସ ଭୋଜନ । ୩୦
ନାହିଁ ମଧୁପୁରେ ଦୂତ ! ସୁରମ୍ୟ ବିପିନ,
ତାଙ୍କ ବକ୍ଷ ହୋଇଥିବ ବନମାଳାହୀନ । ୩୧
ଶୂନ୍ୟ ଏବେ ବୃନ୍ଦାବନ ଶୂନ୍ୟ ବ୍ରଜଧାମ,
ଶୂନ୍ୟ ସିନା ଶୂନ୍ୟ ଏବେ ହରାଇଣ ଶ୍ୟାମ । ୩୨
ବିନୟ କରୁଛୁଁ ଦୂତ ! ଶ୍ୟାମଙ୍କୁ ଉଦ୍ଧବ,
ଉତ୍ସବମୁଖର ବ୍ରଜ ହୋଇଛି ନୀରବ । ୩୩
ନୀରବ କାହାଳୀ ରବ ନୀରବ ମୁରଲୀ,
ନୀପମୂଳ ଶୂନ୍ୟ ନଦୀତଟ ଭ୍ରମସ୍ଥଳୀ । ୩୪
ରାମ ଶ୍ୟାମ ବିନା ତମ ପୂରେ ବୃନ୍ଦାବନେ,
ରବି ଶଶୀ ବିନା ନଭପ୍ରଦେଶ ଯେସନେ ।" ୩୫
ଏକାଳେ ଉଦ୍ଧବ ଦୈବେ ପ୍ରକାଶନ୍ତେ ହାଇ,
ଭୟରେ ବରଜ ସୁତେ ଗଲେକ ପଳାଇ । ୩୬
କେ କହିଲ, "ସୁହୃଦ ହେ ! ବେଗେ ଆସ ଆସ,
ଏ ତ ବିସ୍ତାରଇ ତୁଣ୍ଡ କରିବଟି ଗ୍ରାସ । ୩୭
ଅଘ ଭାଇ ପରି ମନେ ଏ ହୁଏ ପ୍ରତୀତ,
ଅମ୍ଭ ବର୍ତ୍ତମାନକୁ ଏ କରିବ ଅତୀତ । ୩୮
ପଳାଇ ବରଜବାଳେ ଲୁଚିଲେ କାନନେ,
ବାହୁଡ଼ିଲ ବୃନ୍ଦାବନୁଁ ଦୂତ ଭଗ୍ନ ମନେ । ୩୯
କେଶବ ଚରିତ ଅଟେ ସୁଧାମୟ ରସ,
ବୁଧେ ! ଚିନ୍ତ ଚିନ୍ତାମଣି ଚରଣ-ସାରସ । ୪୦

## ଦ୍ୱାବିଂଶ ଛାନ୍ଦ

ରାଗ— କାଳୀ *

### ରାଧାଙ୍କର ସ୍ୱପ୍ନରେ କୃଷ୍ଣ ଦର୍ଶନ ଓ ଶୋକ

ମଧ୍ୟାହ୍ନ କାଳେ   ନ ରହି ଆଳେ   ତମାଳମାଳେ ଅସି,
ଧନେ ମଜନେ   କି ଭାଳେ ମନେ   ରାଧିକା ଶଶି-ହାସୀ । ୧
ହୋଇଛି ଅଭ୍ର   ଅବନୀଶୋଭା   ଧରି ତମାଳ-ଜାଳ,
ଘୋର ତମିରେ   ଶୋଭା କି କରେ   ଶଶାଙ୍କ କର-ଜାଳ । ୨
ନୟନ ରମେ   ଲୋଟି ଚରମେ   ଗୁଚ୍ଛ କୁନ୍ତଳଦଳ,
ପଡ଼େ କି ଖସି   ବାଟ ପ୍ରକାଶି   ଯମୁନା ନଦୀଜଳ । ୩
କୁଞ୍ଚ ଚିକୁର   ତରଙ୍ଗି ଭର   ଚଳେ ସମୀର ମେଳେ,
କି ଅବା ନୀଳ   ଜଳୋର୍ମିମାଳ   ଗିରି ଚୂଡ଼ାରେ ଖେଳେ । ୪
ମୁଖ ମଳିନ   ବାସି-ନଳିନ   ଯେହ୍ନେ ଯମୁନା ଜଳେ,
ନୟନ-ନୀର   ଯଥା ଶିଶିର-ବିନ୍ଦୁ ନିକର ଗଳେ । ୫
ପାଦ ଅଙ୍ଗୁଳେ   ଲେଖଇ ତଳେ   କିଞ୍ଚିତ ନତ ମଥା,
ବିରହାନଳେ   ତା ରୂପ ଝୁଲେ   ହେମ ଅନଳେ ଯଥା । ୬
ନ ପାଇ ବାସେ   ତାଙ୍କୁ ଶରସେ   ଖୋଜି ଖୋଜିଣ ଅଳୀ,
ହେଲେ ପ୍ରବେଶ   ଯହିଁ ଅବେଶ   କରଇ ବ୍ରଜବାଳୀ । ୭
ଅଳୀଙ୍କି ଦେଖି   ପଦ୍ମମୁଖୀ   ଦୁଃଖିତସ୍ୱରେ ଭାଷେ,
"ଅଜି କି ସହି !   ଦେଖିବି ନାହିଁ   ପୀତବାସଙ୍କୁ ପାଶେ । ୮
ମଧୁର ହସି   ମୋ ପୁରେ ଅସି   ମୋ ପାଶେ ବସି ଶେଯେ,
ମୋ ଉରେ ଉର  ଦେଇ ମୋ କର  କରି କରରେ ସେ ଯେ ।" ୯
କହିଲେ ଧୀରେ,   "ରସନିଧିରେ !   ହୋଇଛି ମଧ୍ୟ ଦିବା,
ଅସ ତମାଳ-ମାଳ  ଶୀତଳ ଅନିଳ  ନିଷେବିବା ।" ୧୦

---

* ବୈଦେହୀଶ ବିଳାସ "ବିଜୟୀ ଖାର ବିଜୟ କର" ସଙ୍ଗେ (୧) ସମ୍ବନ୍ଧହସୀ

ମୁଁ ତାଙ୍କ କର   ଧରି ସତ୍ୱର   ଅସିଲି ତାଙ୍କ ସଙ୍ଗେ,
ଗଲେ ସେ କାହିଁ   ମୁଁ ପାଉ ନାହିଁ   ଲୁଚିଛନ୍ତି ବା ରଙ୍ଗେ । ୧୧
ମୁଁ ମାନସରେ   ନିଶି ବାସରେ   ଚିନ୍ତଇଁ ତାଙ୍କୁ ସିନା,
କଜ୍ଜଳ କାଳ   ଏବେ ମୋ କାଳ   ଯଶୋଦାବାଳ ବିନା ।” ୧୨
କହେ କେ ଅଳୀ,   "ସତତ ଭାଳି   କାଳି-ଗଞ୍ଜନେ ମନେ,
ଅରେ ନବୀନା !   ତାହାଙ୍କୁ ସିନା   ଦେଖିଛୁ ତୁ ସ୍ୱପନେ ।” ୧୩
ନାରୀ ରତନ   ଅଳୀ ବଚନ   ଶୁଣିଣ କହେ ବାଣୀ,
"ନ ହୁଏ ପ୍ରତେ   ସ୍ୱପନେ ସତେ   ଦେଖିଲି ବେଣୁପାଣି । ୧୪
ସଖି ! ଯେବେ ସେ   ଥିଲେ ମୋ ପାଶେ   ଏ ଭୀମ ଋତୁଗଣ,
ଦବା ସର୍ବସ୍ୱ   ସେବକୀ ପରି   ସେବଲେ ମୋ ଚରଣ । ୧୫
ଋତୁ ସକଳେ   ଅସି ତ ଗଲେ   ପ୍ରାଣେଶ ନ ଅସିଲେ,
ସାବିତ୍ରୀପତି   ମୋର ଦୁର୍ଗତି   ଲେଖିଛନ୍ତି ବା ଶିଳେ ।” ୧୬

## ବଙ୍ଗଳାଶ୍ରୀ *

"ହେଲା ବିଷମୟ   ବିଷମ ସମୟ   ଗ୍ରୀଷ୍ମ ଅବନୀତଳେ,
ହେଲା ଦିନକର   କର ଖରତର   ଶର କି ସିକ୍ତ ଗରଳେ । ୧୭
ମରୀଚିକା ରଙ୍ଗେ   ଖେଳିଲା ତରଙ୍ଗେ   କରି ପିପାସିଙ୍କି ଭ୍ରାନ୍ତ,
ସଖାଗ୍ରଣି ଧରି   ଧୂଳିଖେଳ କରି   ବହିଲା ପ୍ରଚଣ୍ଡ ବାତ । ୧୮
ଦିଶେ କଣ୍ଟକମୟ-ବାସେ ଶୋଭାମୟ   ପାଦପ ବଲ୍ଲରୀଚୟ,
ହସିଲେ ହରଷେ   ରସି ପ୍ରେମରସେ   ଦିଶେ କାର ଶୋଭାମୟ । ୧୯
ସୁରଙ୍ଗ କୋମଳ   ଦଳେ ସୁଶୀତଳ   ମଞ୍ଜୁଳ କୁଞ୍ଜସଦନେ,
ସୁମରଣି ଶିବା   ବନ୍ଧୁର ଅସିବା   ପଥ ରଖିଲି ନୟନେ । ୨୦
ଘେନି ମଳୟଜ   ଘନସାରରଜ   ସିଞ୍ଚିଣ ବାରିଜ-ଶେଯେ,
ସୁରଭିଅମ୍ବର   କୁସୁମ ନିକର   ବୋଲି ବଧୂ ଚନ୍ଦନେ ଯେ । ୨୧

---

* ବୈଦେହୀଶ ବିଳାସ "ବୋଇଲେ ସୀତା ସିତାଂଶୁମୁଖୀ" ସ୍ୱରେ

ରଚିଲି ବ୍ୟଜନ   ଗୁନ୍ଥୁଅ ତୋରଣ   ମଲ୍ଲିକା ଚମ୍ପକମାନେ,
ସୁଗନ୍ଧି ଉଶୀର   ସୁଶୀତଳ ନୀର   ସେଞ୍ଚିଲି ମଧ୍ୟାହ୍ନ କାଳେ । ୨୨
ଖେଳେ କଳି ମନେ   ଯମୁନା ପୁଳିନେ   ସାୟାହ୍ନେ ଲୀଳା ଅସତନ,
ବନ୍ଧୁ ପାଶେ ବସି   ପ୍ରେମଭରେ ହସି   ରସିକ ବାତ ସେବନେ । ୨୩
ଗ୍ରୀଷ୍ମ ଅସିକର   ଗଲା ପୁଣି ଫେରି   ନ ଅଇଲେ ପ୍ରାଣଧନ,
ଅସିବେ ନାହିଁ କି   ବନ୍ଧୁ କହ ସଖି !   ନିରାଶେ ଭୁଞ୍ଜୁଛୁ ମନ । ୨୪
ମୋର ଅସ୍ତମିତ   ନୋହିଲା ତ ମିତ !   ପ୍ରଚଣ୍ଡ ନିଦାଘ-ଭାନୁ,
ମରୀଚିକା ଦୃଶ   ବନ୍ଧୁମିଳନାଶ   ନାଶ ନୋହୁଛି ମୋ ମନୁ । ୨୫
ଅସିଥିଲା ଦୂତ   ସେ କହି ଗଲା ତ   "ଲଭିବ ଶ୍ୟାମଙ୍କୁ ପୁଣି,"
ନ ଯାଏ ଜୀବନ   ନ ସରଇ ଦିନ   ସେ କଥାକୁ ଗୁଣି ଗୁଣି । ୨୬
ଅଜ କି ଚନ୍ଦନ-ଜହ୍ନେବେ ମଗନ   ହେବ ପୁଣି ବନ୍ଧୁ ସଙ୍ଗେ,
ଚନ୍ଦନରେ ଭରି   ହେମ ପିଚକାରୀ   ମାରିବ ସେ ନୀଳଅଙ୍ଗେ ।" ୨୭

କଳହଂସ କେଦାର *

"ହୁଅନ୍ତେ ସହଚର ! ନିଦାଘ ଗତ,
ଆସି ବରଷା କାଳ ହେଲା ଅଗତ ଗୋ ।
କାଦମ୍ବିନୀ ବକାଳୀମାଳିନୀ ଭୀମା,
ଗର୍ଜି ଘୋଟିଲା ନଭ ବୁଡ଼ାଇ ସୀମା ଗୋ । ୨୮

ପଡ଼ିଲା ନିରନ୍ତର ଆସାର ବାରି,
ଦିବା ଯାମିନୀ ଭେଦ ନୋହିଲା ବାରି ଗୋ ।
ଘନକୋଳେ ହସିଲା ସଉଦାମିନୀ,
ସେ ନୋହେ ଅମ୍ଭ ପରି ହତ ଭାଗିନୀ ଗୋ । ୨୯

ବାରିବାରଣ ଭାଙ୍ଗି ସରିତକୂଳ,
ଗଡ଼ିଲେ ବନ୍ଧୁ ପାଶେ ଲଙ୍ଘିଣ କୂଳ ଗୋ ।

---

* ରସକଲ୍ଲୋଳ "କୁଣ୍ଡକୁଟୀରେ ଫୁଲ ସେଜ ଉପରେ" ରାଗେ

ସମାଜ-ବାରଣ ତ ଅଲଙ୍ଘ୍ୟ ଅତ,
ତେଣୁ ସିନା ଧୀନା ଏ ଗୋପଯୁବତୀ ଗୋ । ୩୦
ଆଳାପିଲେ କଳାପୀକଳାପ ଷଡ୍ଜ,
ଧୈବତ ଆଳାପିଲେ ମଣ୍ଡୂକବ୍ରଜ ଗୋ ।
ପିକ ପଞ୍ଚମତାନ ହୋଇଲା ତୁନ,
ସାଧୁ ଶୁଣିଲେ ଯଥା ଦୁର୍ଜ୍ଜନ ବାଣୀ ଗୋ । ୩୧
କଦମ୍ବକଦମ୍ବରେ ମନ ଆକୁଳି,
ଫୁଟିଲେ ଫୁଲ କିବା ହେମବାଟୁଲୀ ଗୋ ।
କାମ ସର୍ପିଙ୍କି ପାଞ୍ଚ ଗୋପିନୀ ନାଶ,
ପାଶରେ ନ ଥିବାରୁ ହେମାଭବାସ ଗୋ । ୩୨
ଘନ କଲା କି ରଙ୍ଗ ମୋ ସଙ୍ଗେ ସହ !
ସେ ଅସେ ବକ୍ଷେ ବନମାଳାଏ ବନ୍ଧୁ ଗୋ ।
ମୁଁ ତାକୁ ଶ୍ୟାମ ଭ୍ରମି ପରାଣସଖି !
ଗୃହେ ନିରେଖି ଦଣ୍ଡେ ପଡ଼ ଚମକି ଗୋ । ୩୩
କାହୁଁ ପାଇବ ଘନ ନିଭଙ୍ଗଠାଣି,
କାହୁଁ ପାଇବ ସୁଧାମୟ ଗୃହାଣି ଗୋ ?
କଳାପରେ ମଣ୍ଡିଲେ ଚନ୍ଦ୍ରିରପାକ,
କଳାପୀ ଶୋଭି ଧରି ପାରେ କି କାକ ଗୋ ? ୩୪
ପ୍ରାବୃଟ ସ୍ୱରସଂ ମଦନ ଘୁମର,
କଦମ୍ବ ଡାଳେ ଦୋଳାସନକୁ ଧର ଗୋ ।
କାନ୍ଦ କାନ୍ଦ ମୁଁ ହେଲି ଧୈର୍ଯ୍ୟବିହୀନ,
କାନ୍ଦିଲେ ଧୀନାର କି ସରେ ଦୁର୍ଦ୍ଦିନ ଗୋ ? ୩୫
ଏମନ୍ତେ ଆସି ଗଲା ବରଷାକାଳ,
ନ ଆସିଲେ ବ୍ରଜେ ଯଶୋଦାବାଳ ଗୋ ।

---

(୧) ଝୁଲଣ ଯାତ୍ରା

ବ୍ରଜ କି ତାଙ୍କ ମନୁ ଗଲା ପାସୋରି,
କପଟୀ ନିର୍ଦ୍ଦୟ ହେଲେ ନନ୍ଦ କିଶୋର ଗୋ । ୩୬
କ୍ଷଣି କ୍ଷଣରେ କ୍ଷଣପ୍ରଭା ଯେସନ,
ବିନାଶି ତମ କରେ ତମ ବର୍ଦ୍ଧନ ଗୋ ।
ପ୍ରାଣବନ୍ଧୁ ଆସିବା ଆଶା ତେସନେ,
କ୍ଷଣେ ଜଳି ନିଭଣା ବଢ଼ାଏ ମନେ ଗୋ ।" ୩୭

ମଙ୍ଗଳ *

"ଦୁଅନ୍ତେ ଅତି ବିରଳ ଘନକାଳ ଶେଷ,
ହୁତର ଶରଦକାଳ ହେଲା ପରବେଶ । ୩୮
ଅତି ରମଣୀୟ ଶୋଭା ଧରିଲା ପ୍ରକୃତି,
ଚଣ୍ଡୀବେଶ ଛାଡ଼ି ଶିବା ହେଲେ କି ପାର୍ବତୀ ? ୩୯
ତାରାପତି ତାରାତତି ଭାତି ନଭସ୍ଥଳେ,
ତାଳିଲେ ଭବ-ଅପାର ନିଶାରେ ଉଜ୍ଜ୍ୱଳେ । ୪୦
ଫୁଟିଲେ ଶାରଦ ଫୁଲ୍ଲ ରମ୍ୟ ବନସ୍ଥଳେ,
କୁମୁଦ ରାଜୀବରାଜି ବିରାଜିଲେ ଜଳେ । ୪୧
ଯେସନ ଚନ୍ଦନ ରଞ୍ଜେ ନୀଳ-କଳେବର,
କେବେ କେବେ ନଭେ ମେଘଖଣ୍ଡ ଶୋଭାକର । ୪୨
ଅତି ଦାନେ ରିକ୍ତକର ଦାନଶୀଳ ପରି,
ଅଳ୍ପ ବରଷିଲା ଘନ ମନ୍ଦ୍ର ଧ୍ୱନି କରି । ୪୩
ନୟନେ କେଦାରରାଜି ଢାଳନ୍ତି ଅମିୟ,
ଶ୍ୟାମଳ ଶସ୍ୟାବଳୀରେ ହେଲେ ରମଣୀୟ । ୪୪
ଯମୁନାତଟ କାନନେ ଶାରଦଲତିକା,
ନବୀନ ପଲ୍ଲବମୟୀ ହେଲେ ଉଜ୍ଜ୍ୱଳିକା । ୪୫

* ଲାବଣ୍ୟବତୀ "ଏଥୁଅନନ୍ତରେ ଯେ ଯାମିନୀ ହେଲା ଶେଷ" ରାଗ

ଖେଳିଲେ ମତ୍ତ ମରାଳେ ଯମୁନା ବେଣୀରେ,
ହୀରକଖଚିତ କି ଚାରୁ ଧରଣୀବେଣୀରେ । ୪୬
ଶାରଦୀୟ ଶୋଭା ଧରି ରମ୍ୟ ବୃନ୍ଦାବନ,
ଶାରଦୀୟ ରସଭାବ କଲା ଉଦ୍ଦୀପନ । ୪୭
ରାସରସ-ରସିକର ବିନା ସହଚର !
ସେ ଭାବ ଫୁଟି ଝରିଲା ବନେ ଫୁଲ ପରି । ୪୮
କାନ୍ତ ଆଗମନ ପଥ ମୁଁ ରହିଲି ଚାହିଁ,
ମଧୁର ଶରତ କାଳୁ ରହିଲା ତ ନାହିଁ ।"୪୯

କୁମ୍ଭ କାମୋଦୀ *

"ହେମନ୍ତ କାଳ ଆସି ହେଲା ପ୍ରବେଶ ଶରଦେ ବିଗତେ,
ଅବଶ୍ୟ-ଶସ୍ୟନେ ପ୍ରକାଶିଲା କାଡ଼ି ଖେଡ଼ି ଏ ଜଗତେ । ୫୦
ଜଳ ଅନିଳରୁ ଛାଡ଼ିଲା ଆଦର ବଢ଼ିଲା ଅନଳେ,
ବନ୍ଧୁପ୍ରୀତିରହିତ ଶିକ୍ଷା କଲେ ଅବା ମହୀରେ ସକଳେ । ୫୧
ରବିର ବିରହେ ଉତ୍ତର ଛାଡ଼ିଲା ନିଶ୍ୱାସ ଅକୁଳେ,
ବନ୍ଧୁ ବିନା ଯଥା ମୁଁ ହତଭାଗିନୀ ଆକୁଳା ଗୋକୁଳେ । ୫୨
ଜାଳିଲା ତପନଂ ହେମନ୍ତ-ଦହନ ପଙ୍କଜ-କାନନେ,
ଦହୁଛନ୍ତି ଯଥା ବନ୍ଧୁ ଗୋପିନୀଙ୍କି ବିରହ-ଦହନେ । ୫୩
ପୁଣି ଖେଚରାନ୍ତ ଆଣିଣ ପ୍ରାବୃଟ ତୋଷିବ ନଳିନୀ,
ଗୋପୀନାଥ ସତେ ନ ହୁଏ ପରତେ ତୋଷିବେ ଗୋପିନୀ । ୫୪
ଆସିଣ ହେମନ୍ତ ହେଲା ପ୍ରୀତି ଗତ ନଇଲେ କିଶୋର,
ନିଶ୍ଚୟ ବିରଜ କଥା ତାଙ୍କ ମନୁ ଗଲା କି ପାସୋର ।"୫୫

---

* ବୈଦେହୀଶ ବିଳାସ "ବିନାଶ ନାସା ଶ୍ରବଣ ସୂର୍ପଣଖା" ରାଗେ
(୧) ସୂର୍ଯ୍ୟ ବୃନ୍ଦମାନଙ୍କର ବର୍ଣ୍ଣା ଅଟନ୍ତି ।

## ମୁଖାସ୍ତ *

"ହେମନ୍ତ ଅନ୍ତେ ଶିଶିର, ପ୍ରଭାବ ତୁଷାର-ତୀର,
କଲ ଜୀବଙ୍କୁ ଅଧୀର ସେ, ଭେଦ ଶରୀର । ସଜନି ଗୋ ! ୫୬
ଶୀତଭୟେ ଛନଛନ, ଛାଡ଼ି ଦୀର୍ଘ ନଭାଙ୍ଗନ,
ଦକ୍ଷିଣପଥେ ତପନ ସେ, କଲେ ଗମନ । ସଜନି ଗୋ ! ୫୭
ସୁଦୀର୍ଘା ହୋଇ ଯାମିନୀ, ତୋଷିଲ କାନ୍ତ-ସଙ୍ଗିନୀ,
ବଢ଼ାଇଲ ବିରହିଣୀ ସେ, କର ଦୁଃଖିନୀ । ସଜନି ଗୋ ! ୫୮
କୋମଳ-ହୃଦୟା ଉଷା, ଦେଖି ଦୁଃଖେ ବ୍ରଜଯୋଷା,
ଝଟିକା-ବିଷାଦ-ଦୃଶା ସେ, ଅମ୍ବୁ ସଦୃଶା । ସେ ହେଲ ଗୋ ! ୫୯
ସମବେଦନକୁ ବିନା, ପରଦୁଃଖ ଯତ୍ନେ ଚହ୍ନା,
ଲଳନା ମନ ବେଦନା ସେ, ଜାଣେ ଲଳନା । ସଜନି ଗୋ ! ୬୦
ବିରହବତୀ ବିଶେଷ, ସହିଲେ ବିରହକ୍ଲେଶ,
ଯିବାରୁ ଛାଡ଼ି ବିଦେଶ ସେ, ପ୍ରିୟେ ଜୀବେଶ । ସଜନି ଗୋ ! ୬୧
ଶ୍ୟାମ ବିନା ବୃନ୍ଦାବନ, ଯଥା ବ୍ରଜଧାମ ଜନ,
ହୀନ ଭୂଷଣ ବସନ ସେ, କଲ ଧାରଣ । ସଜନି ଗୋ ! ୬୨
ଶୀତ ପୀଡ଼ ଭୀରୁବାର, ବୋଲଏ ସେ ବଳିଆର,
ପୁଂସବର୍ଗେ ଅଧିକାର ସେ, ନାହିଁ କି ତାର । ସଜନି ଗୋ । ୬୩
ବ୍ରଜବାଳୀ ପରକାର, ହେଲ ଦଶା ପଙ୍କଜାର,
କେଶବ ବିନା ଅସାର ସେ, ଅଟେ ସଂସାର । ସଜନି ଗୋ ! ୬୪
ଅସି ଗଲ ଶୀତ ମାସ, ବସନ୍ତ ହେଲ ପ୍ରକାଶ,
ନ ଅସିଲେ ପୀତବାସ ସେ, କଲେ ନିରାଶ । ସଜନି ଗୋ !" ୬୫

---

* ବ, କ, "କଲେ ଯାଇ ଅବଲୋକ" ସ୍ୱରେ

ଗ୍ରୈହ୍ମି *

"ଏକାନ୍ତ କାନ୍ତ ଦୁରନ୍ତ    ସୁଚେତନ କୁନ୍ତ ବନ୍ତ,
ବସନ୍ତ କୃତାନ୍ତବତ ଅଗତ ମିତ ।
ପରିମଳ ସମାକୁଳ,    ଅଳିକୁଳରେ ସଙ୍କୁଳ,
କୁସୁମକୁଳ ମୁକୁଳ ହେଲା ଅମିତ,
ସଧୀର ସଧୀର ସଧୀର,
ବହୁ ଦକ୍ଷିଣ ବିରହୀ କରି ଅଧୀର । ୨୬
ତମାଳ ରସାଳ ଶାଳ    ବକୁଳାଦି ପିଆଶାଳ—
ଦଳେ ମଞ୍ଜୁଳେ ରଞ୍ଜିଲେ ନିକୁଞ୍ଜବନ,
ଏ ମଧୁକରନିକର    ମଧୁରିଲେ ଫୁଲକର,
କରି ଉଦ୍ଗାର ମଧୁର ଝଙ୍କାରସ୍ୱନ,
କୋମଳେ ଡାକିଲେ ଦଧ୍ୟୂଳ(୧)
କାମୁକ କୋକିଳକୁଳ କଲେକି ଛଳ । ୨୭
ଶରତ ହେମନ୍ତ ଶୀତ    ବରଷା ଗ୍ରୀଷ୍ମ ମିଳିତ,
ଘୃତ ମଧୁ ଦଧି ଗୁଡ଼ କ୍ଷୀର ଯେସନେ,
ସ୍ୱଦର୍ପେ ଦର୍ପକ ସଖା    କ୍ଷିତିତଳେ ଦେଲା ଦେଖା,
ଗଲା ପୁଣି ବିରହୀଙ୍କି ଜାଳି ଜ୍ୱଳନେ,
ନ ଆସିଲେ ନନ୍ଦକୁମର,
କଲେ ଚିତ୍ତ ଏଥର ଅଥର(୨) ପଥର । ୨୮
ଆଜ କି ଗୋ ସହଚରି !    ବନ୍ଧୁ ସଙ୍ଗରେ ଚର୍ଚ୍ଚରି,
ଖେଳିବି ମୁଁ ପିଚକାରି ଭରି ସୁରଙ୍ଗେ,
ମାତି ମଧୁ-ଋତୁରସେ    ଉଲ୍ଲାସେ କୌତୁକବଶେ,
ପୁଣି ଆଣି ଦେବ ଫଗୁ ବନ୍ଧୁର ଅଙ୍ଗେ,

---

* ବୈ, ବ, "ବଉଳକୁ ଅଲିଙ୍ଗନ" ବାଣେ

(୧) ପକ୍ଷୀ ବିଶେଷ । (୨) ଅଧିକ ।

ତାଙ୍କୁ ବେଢ଼ି ଗୋପିନୀଗଣ,
ପିଚକାରୀ ଫଗୁ ଧରି କରିବେ ରଣ । ୬୯
ପ୍ରବାଳ-କୁସୁମ-ବତୀ ସୁଦୁର୍ଯ୍ୟତମତୀ ବ୍ରତତୀ,
ଋତୁପତି ମୋଦେ ମାତି ଅତି ଉଲ୍ଲାସେ,
ତରୁ ଅଙ୍ଗେ ଅନୁରାଗେ, ତାଳି ନିଜାଙ୍ଗ ସୁହାଗେ,
ହସିଲ ଯମୁନା-ନୀର-ଦର୍ପଣ ପାଶେ,
ମୁଁ ଅଭାଗୀ ପୂର୍ବନନ୍ଦ ଧାମେ,
ପୁଣି ବସି ହସିବି କି ବନ୍ଧୁର ବାମେ ?" ୭୦

( ମଙ୍ଗଳଗ୍ରନ୍ଥରୁ ) *

ସଖୀ ଶ୍ରୀମତୀ ମନର ବିନୋଦ ପାଇଁ,
ଘେନି ତାଙ୍କୁ ଫୁଲବନେ ମିଳିଲେ ଯାଇ । ୭୧
କରୁଥିଲେ ହରି ଅସ୍ତଗିରି ଗମନ,
କରୁଥିଲି ତମ ବହିର୍ଗମନେ ମନ । ୭୨
ଫୁଲକୁଳ ମୁଖେ ବୋଲି ରଙ୍ଗମୟୂଖ,
ନାଚୁଥିଲେ ମନ୍ଦେ ହସି ପ୍ରକାଶି ସୁଖ । ୭୩
ଦେଖି ଦିବା ଶେଷ ପରିଚର ଗୋପନେ,
ହେଲ ବାତ ରତ ଫୁଲଗନ୍ଧ ହରଣେ । ୭୪
ପ୍ରତିବେଶୀ ପକ୍ଷୀ ଅସି ପ୍ରକାଶି କଳ,
କ୍ରୈର କ୍ରୈର ଡାକ ଜଗେ କଲେ ଚହଳ । ୭୫
ମରମର ଶବ୍ଦେ ତରୁ ଭର୍ତ୍ସିଲେ ବାତେ,
କମ୍ପିଲେ ତା କଦାଚାର ଦେଖି ସାକ୍ଷାତେ । ୭୬
ଧାଇଁଲେ ଅକୁଳେ ଅଳି ହୁଙ୍କାର କରି,
ବିଷାଦରେ ଗନ୍ଧବହ ପଥାନୁସରି । ୭୭

---

* କୋଟିବ୍ରହ୍ମାଣ୍ଡ ସୁନ୍ଦରୀ, "ଅଷାଢ଼ସ ଘନକାଳ ହୋଇ ହୃଦସ୍ଥ" ସ୍ୱରେ

ପଳାଇ ନ ପାରି ବାଳ ଅତ୍ୟନ୍ତ ଭୟେ,
ଗଲି ଗଡ଼ି-ଧନସହ ଯମୁନାଶୟେ । ୭୮
ହୃତଗର୍ବୁଁ ଭାଗ ପାଇ ରବିନନ୍ଦନୀ,
ଆନନ୍ଦେ ନାଚିଲା କରି କଲ୍ଲୋଳଧ୍ୱନି । ୭୯
ସଙ୍ଗିନୀ ସଙ୍ଗେ ରଙ୍ଗିଣୀ ରାଧାସୁନ୍ଦରୀ,
ତୋଳିଲେ ଏକାଳେ ଫୁଲ ଅଞ୍ଜଳ ଭରି । ୮୦
ମାଳତୀରେ ନେଇ ଢାଳି କେ ଶ୍ୟାମାବର,
କହିଲେ, "ଏହାକୁ ଛାଡ଼ି ଗଲା ଭ୍ରମର । ୮୧
ଏ ଦେବେହେଁ ହସୁଅଛି ଆନନ୍ଦଭରେ,
ରଖିଛି ମିଳନ ଆଶା କାଲି ପ୍ରାତରେ ।" ୮୨
ସଖୀ ବାଣୀ ଶୁଣି ରାଧା ନିଜ ଅଙ୍ଗୁଳି,
ପଦ୍ମଅଡ଼େ ବଢ଼ାଇଲା କିଛି ନ ବୋଲି । ୮୩
ଅଦ୍ଭୁତ-କୁସୁମେ ପୁଣି ମନେ କି ଭାଳି,
ଫିଙ୍ଗିଦେଲେ ଅବନୀରେ ବରଜବାଳୀ । ୮୪
ଅକୁଳେ କାନ୍ଦିଲେ ମୁଖେ ଦେଇ ବସନ,
କହିଲେ, "କୁସୁମେ, ସଖି ! କି ପ୍ରୟୋଜନ ? ୮୫
କେତେ ଦାମ ଗୁନ୍ଥିଛି ମୁଁ ଏହି କାନନେ,
ବନ୍ଧୁ ରମଣୀୟ ଚୂଡ଼ା ବକ୍ଷମଣ୍ଡନେ ।" ୮୬

ବିହାଗ

ପୁଣି ଉଚ୍ଚସ୍ୱରେ ବିଳାପି ଶ୍ରୀମତୀ କହିଲେ ହୋଇ କାତର ଯେ,
"ବ୍ରଜ ବ୍ରଜଭାବ ପଛକୁ ପକାଇ ଛାଡ଼ିଗଲେ ବଂଶୀଧର ଗୋ,
ସହଚରି ! ୮୭
ଏ ବ୍ରଜଧାମରେ ଅଛି ତ ସକଳ ଅଛି ଏ ଅଭାଗୀ ରାଇ ଗୋ,
ବ୍ରଜର ଆଉ କି ସେହି ଶୋଭା ଅଛି ଯିବାରୁ ପ୍ରାଣକହ୍ନାଇ ଗୋ,
ସହଚରି ! ୮୮

ଏହି ଅଛି ସେହି ରମ୍ୟ ବୃନ୍ଦାବନ ଏ ସେହି ଯମୁନାକୂଳ ଗୋ,
ଏ ସେହି ଶୀତଳ ଲତିକା-ମଣ୍ଡପ ଏ ସେହି କଦମ୍ବମୂଳ ଗୋ,
ସହଚରି ! ୮୯

ଏହି ସେହି ଶିଳାସନ ନୀପମୂଳେ ଏ ସେହି ତମାଳମାଳ ଗୋ,
ଅହା କାହିଁ ଅଜ ଏହାଙ୍କ ସେ ଶୋଭା ନ ଥିବାରୁ ନନ୍ଦବାଳ ଗୋ,
ସହଚରି ! ୯୦

ସେ ବାଙ୍କଚୂଳିଆ କଦମ୍ବମୂଳିଆ ଯମୁନାକୂଳିଆ ବିନା ଗୋ,
ଶୋଭାର ଅକର ଏ ବ୍ରଜନଗର ଅଛି ହତଶିରୀ ସିନା ଗୋ,
ସହଚରି ! ୯୧

ଏ ସେହି କୋକିଳକୁଳର କାକଳି ଏ ସେହି ଅଳିଗୁଞ୍ଜନ ଗୋ,
ବନ୍ଧୁ ବିନା ନାହିଁ ଏହାଙ୍କର ସେହି ମାଧୁରୀ ଶ୍ରୁତିରଞ୍ଜନ ଗୋ,
ସହଚରି ! ୯୨

ଯମୁନା-ସଲିଳ-ଶୀକର-ଶୀତଳ ଏ ସେହି ମୃଦୁଳ ବାତ ଗୋ,
ବନ୍ଧୁ ବିନା ଏବେ ଦେହକୁ ଦହୁଛି ଯେସନେ ଦହନ-ପାତ ଗୋ,
ସହଚରି ! ୯୩

ଏହି ସେହି ଶଶୀ ରଜତ ସୁଖେ ହସି ବରଷି କିରଣରାଶି ଗୋ,
ଏହି ସେହି ଫୁଲ୍ଲକୁଳ ଟଳ ଟଳ ପ୍ରେମେ କୌମୁଦୀରେ ଭାସି ଗୋ,
ସହଚରି ! ୯୪

ନାହିଁ ତ ଏହାଙ୍କ ସେହି ରମ୍ୟ ଛବି ନାହିଁ ସେହି ସୁମାଧୁରୀ ଗୋ,
ବରଜଭୂଷଣ ଶୋଭାର ଜୀବନ ଯିବାରୁ ମଥୁରାପୁରୀ ଗୋ,
ସହଚରି ! ୯୫

ଏ ସେହି ମଧୁରନାଦିନୀ ଯମୁନା ଏ ସେହି ଧୀରତରଙ୍ଗ ଗୋ,
ଏହି ସେହି ଜୀର୍ଣ୍ଣ-ତରଣୀ ରହିଛି ଏହି ସେହି ଭଗ୍ନମଙ୍ଗ ଗୋ,
ସହଚରି ! ୯୬

ପାଷାଣହୃଦୟ ଧରି ଛାଡ଼ି ଗଲେ ଅମ୍ଭର ସେହି କାଣ୍ଡାରି ଗୋ,
କରି ନାନାରଙ୍ଗ ଯମୁନା ତରଙ୍ଗ କେ ଏବେ କରିବ ପାରି ଗୋ ?
ସହଚରି ! ୯୭

ଏହି ସେହି ନୀପ ଯହିଁ ଅମ୍ଭ ବାସ ଚୋରାଇ କଲେ ବନ୍ଧନ ଗୋ,
ଯହିଁ ବନ୍ଧୁ ହୋଇଥିଲେ ଭୂତବେଶ ଏ ସେହି ତମାଳବନ ଗୋ,
ସହଚରି ! ୯୮

ଏ ସବୁ କପାଇଁ ନ ଯାଇ ରହିଛୁ ଯଦି ଗଲେ ପ୍ରାଣଧନ ଗୋ,
ପ୍ରାଣଧନ ମୋତେ ପାସୋରି ଦେବାରୁ ପାସୋରି ଦେଲା ଶମନ ଗୋ,
ସହଚରି ! ୯୯

ଛାଡ଼ି ଜୀବତେଶ ଗଲେ କଂସଦେଶ ପରିହରି ଦୟା ମାୟା ଗୋ,
କି ଅଶେ ରହିଛୁ ଏ ପୋଡ଼ା-ଜୀବନ କି ସୁଖେ ରହିଛୁ କାୟା ଗୋ,
ସହଚରି ! ୧୦୦

କାନ୍ଦି କାନ୍ଦି ରାଧା ବସିଲେ ମଜନେ ଭୁଲିଲେ ପୁତ୍ତଳି ପରି ଯେ,
ବିପରୀତ ଫଳ ଦେଖି ତାଙ୍କୁ ସଙ୍ଗେ ଘେନିଗଲେ ସହଚରୀ ଯେ,
ସଦନକୁ । ୧୦୧

ଶମନ-ଭବନ-କଦନ-ଖଣ୍ଡନ ନାମ ଜପ ଅନୁକ୍ଷଣେ ହେ,
ମଜ୍ଜ ଭକ୍ତି-ରସେ ଧ୍ୟାୟିଣ ମାନସେ ଶ୍ରୀଚିନ୍ତାମଣି ଚରଣେ ହେ,
ବୁଧଜନ ! ୧୦୨



## ତ୍ରୟୋବିଂଶ ଛାନ୍ଦ

ରାଗ—ଚିନ୍ତାକୌଶିକ *

### ଜରାସନ୍ଧ ସହିତ ଯୁଦ୍ଧ

ମଥୁରେଶ ନାଶ  ସଦେଶ ପ୍ରବେଶ  ହେଲା ମଗଧେଶ ପାଶେ,
ମଗଧର ପତି  ଚମକି ତଡ଼ିତ  ବିସ୍ମୟେ ବଚନ ଭାଷେ,
"ରେ ଦୂତ !
କହୁ ବାତୁଳ ପରାୟେ ତୁ ତ,  ତୋତେ ଲାଗିଛି ବା ବ୍ରହ୍ମଭୂତ । ୧

* ବୈ, ବ, "ବୁଝି ବୁଧ ଯୁଦ୍ଧ ନ ପାଇଲା ଜଳ" ସ୍ୱରେ

ଯକ୍ଷ ନାଗ ଦେବ   ଦାନବ ମାନବ   କମ୍ପିତ ଯା ଭୁଜବଳେ,
ଯାହା ପାଦଭରେ   ବସୁନ୍ଧରା ଥରେ   ଯାହା କରେ ମେରୁ ଚଳେ,
ରେ ଦୂତ !

ତାକୁ ବିନାଶିଲା ନନ୍ଦସୁତ,   ଏ ବାର୍ତ୍ତା କି ତୋ ମନ ସମ୍ଭୂତ ? ୨

ଯଦି ମଦ୍ୟପାୟୀ   ନୋହୁ ଦୂତ ! ତୁହି   କହ ସତ୍ୟ କରି କହ,
କେମନ୍ତେ ମଣ୍ଡକ   ଅହିବରାନ୍ତକ   ହେଲା ଲାଗୁଛି ସନ୍ଦେହ,
ରେ ଦୂତ !

ମିଥ୍ୟା କହିଲେ ଖଡ୍ଗରେ ଦ୍ରୁତ, ହେବ ତୋର ଶିର ଗ୍ରୀବାଚ୍ୟୁତ ।" ୩

ଉତ୍ତରିଲା ଦୂତ,   "ଶୁଣ ରକ୍ଷନାଥ !   କହୁଛି ମୁଁ ସତ୍ୟବାଣୀ,
ଅସମ୍ଭବ ବିଧି   ଇଚ୍ଛାରେ ସମ୍ଭବେ   ବିଧି ଇଚ୍ଛା ନୋହେ ଜାଣି,
ହେ ଶମ୍ଭୁ !

କଳବନ୍ଧୁ ହୁଏ ଅଶନିଭୁଂ,   ପଡେ ଗହଳ ଉପଲ ଦିବୁଁ । ୪

ନନ୍ଦ ବେନି ବାଳ   ଯେହ୍ନେ ମହାକାଳ   ପ୍ରବେଶି ମଧୁମଣ୍ଡଳେ,
ମୁଷ୍ଟିକ ଚାଣୁରେ   ଭୀଷଣ କୁଞ୍ଜରେ   ବିନାଶିଲେ ବାହୁବଳେ,
ସେ ହେଲେ,

ତହୁଁ ସଭାତଳେ ଯାଇ ହେଲେ, କାଳ ବିକାଳ କି ଏକମେଳେ । ୫

କଂସର ନୟନ   ହୁଅନ୍ତେ ପତନ   ସେ ବେନି ଭାଇ ବଦନେ,
ତତ୍ପରେ ମହାବୀର   ତେଜିଲେ ଶରୀର   ବସି ଜଗତ-ଆସନେ,
ହେ ଶୁଣ,

ଖସି ପଡ଼ିଲେ ଭୂମିରେ ପୁଣି,   ବାତେ ଉଡ଼ି ପଡ଼େ ଯେହ୍ନେ ତୃଣ । ୬

ଯେସନେ ବିଦ୍ୟୁତ   ହୋଇ ନିପତିତ   ଆକର୍ଷି ଘେନେ ଜୀବନ,
କ୍ଷୁଦ୍ର ଗୋପବାଳେ   ଆସି ସଭାତଳେ   କଂସକୁ କଲେ ତେସନ,
ହେ ଶୁଣ,

ଧରଛନ୍ତ୍ର କି ଆଶ୍ଚର୍ଯ୍ୟ ଗୁଣ,   ନାଶ କାର୍ଯ୍ୟେ କେ ଏତେ ନିପୁଣ ?" ୭

---

(୧) ଯହିଁରୁ ବଜ୍ର ଜନ୍ମେ

ମଗଧର ପତି   କ୍ରୋଧଶୋକେ ଅତି   କଳ୍ପି ତ ଯାମାତା ନାଶେ,
ଛାଡ଼ିଲ ଅପାର   ତାଳ ନେଇଁ ଧାର   ମୃଗ ରଖି ପିନ୍ଧାବାସେ,
ସେ କରେ,
ଘନେ ପ୍ରହାରଣ କପାଳରେ,   ଦେଲେ ଅଶ୍ୱାସ ସଚିବବରେ । ୮

ରଦନେ ରଦନ   କରଣ ଘର୍ଷଣ   ଗର୍ଜି କହେ ଜରାସନ୍ଧ,
"କଂସାରଜୀବନ   କରିବି ଚର୍ବଣ   ଏ ମୋର ମୁଖ୍ୟ ନିର୍ବନ୍ଧ,
ହେ ତାତ୍ତ୍ୱ,
ଅଶ୍ରୁ ପେଷିବ ଅନ୍ତଃକଠାକୁ,   ହିନ୍ଦୁକଳେ ଦେବି ଯାଦବାଙ୍କ । ୯

ମଥୁରାଭୁବନ   କରିଣ ଖନନ   ନିକ୍ଷେପିବି ସିନ୍ଧୁଜଳେ,
ପାପୀ ଉଗ୍ରସେନ   ମାଂସକୁ କାଟିଣ   ହବି କରିବି ଅନଳେ,
ମୋ ପଣ,
କରି ତା ରକ୍ତେ ତୃଷା ତର୍ପଣ,   ତାର ଅସ୍ଥି କରିବି ଚର୍ବଣ । ୧୦

ଯଦୁକୁଳ-ରକ୍ତ-ସ୍ରୋତ ମୁଁ ନିଶ୍ଚିତ   ବୁହାଇବି କରବାଳେ,
ଦେଖିବି ଯାଦବେ   କେ ରକ୍ଷା କରିବେ   ସ୍ୱର୍ଗ ଅବନୀ ପାତାଳେ,
ମୁଁ ଅଜ,
ଯିବି ବୈରି ନିର୍ଯାତନେ ସାଜି,   ଘେନି ପତ୍ତି ରଥ ଗଜ ବାଜୀ । ୧୧

ଅଜି ବୈରତୃଷା   ନାଶିବାକୁ ଅଶା   ଅରାତି ଶୋଣିତପାନେ,
ଯାମାତା-ବିନାଶ   ଶୋକ ଯିବ ନାଶ   ତାଙ୍କ ପ୍ରତିଶୋଧ ଦାନେ,
ମୁଁ କରି,
ତାଙ୍କ ନାଶ୍ଚିକି ମୋ କନ୍ୟା ପରି,   ତାଙ୍କ ବସତି ପ୍ରେତନଗରୀ । ୧୨

ସାଜ ସେନା ସାଜ   ଅଚଳମ୍ବେ ସାଜ   ଅହେ ରସକୁଳବୀରେ,
ନନ୍ଦର ସୁତଙ୍କୁ   ଅଥବା ନିଜକୁ   ନ ରଖିବି ଏ ମହୀରେ,
ହେ ବୀରେ !
ଅରାତିଙ୍କ ସେ ବକ୍ଷ୍ୟତ-ନୀରେ,   ଦିଏ ବୁଡ଼ାଇ ଧନ୍ୟ ମହୀରେ ।" ୧୩

ପାଇ ନୃପାଦେଶ    ଗୂଢ଼ ଉଚ୍ଛ୍ୱାସ    ନାଦିଲା ସମରଶୃଙ୍ଗ,
"ସାଜ ସାଜ ସାଜ    ଅବିଳମ୍ବେ ସାଜ ସାଜ    ସେନା ଚତୁରଙ୍ଗ,"
ସେ ନାଦେ,
ବୀରେ ସଜ ହେଲେ ବୀରୋନ୍ମାଦେ, ଯେସନ୍ତେ ସିଂହ ମତ୍ତ ରକ୍ତସ୍ୱାଦେ । ୧୪
ତାହାରିଲେ ପତ୍ତି    ହୋଇ ପନ୍ତି ପନ୍ତି    ଧରି ବର୍ମ ଚର୍ମ ଅସି,
ପୃଷ୍ଠେ ଶରାସନ    ଶର ଏକମନ    କୁନ୍ତ କଟିଦେଶେ କଷି;
ସେ ଧରି,
ଶିରେ ଶିରସ୍ତ୍ରାଣ ଦୃଢ଼ କରି,    ରୂପେ କୃତାନ୍ତ କିଙ୍କର ପରି । ୧୫
ଜବନ ସେହ୍ଵାର୧    ସଇନ୍ଧବ ସାର    ଅଦ ନାନା ବାଜୀରାଜି,
ବକ୍ର ଗ୍ରୀବା ଧରି    ନୃତ୍ୟ କରି କରି    ଅସିଲେ ସମରେ ସାଜି,
ସେ ଯାନ,
କରିବେ କି ଦୂରତ୍ୱକୁ ପାନ,    ଖୁରଘାତେ ମାର୍ଗ କମ୍ପମାନ । ୧୬
ଖଣ୍ଡଶୈଳ ପରି    ଯୂଥ ଯୂଥ କରି    ଅହିଲେ ସମରବେଶେ,
ରଥାଙ୍ଗ ଘର୍ଘର    ଘୋଷିଲା ଗମ୍ଭୀରଘନ ଯଥା ନଭୋଦେଶେ,
ହେ ଧୀର !
ନାଦ ସମରବାଦ୍ୟ ଗମ୍ଭୀର,    କଲା ଦିଗଚକ୍ରକୁ ଅଧୀର । ୧୭
ମଦଘନରେଣ    ଧରି ବୀରବେଶ    ମିଳିଲା ବାହିନୀ ସଙ୍ଗେ,
ଶୋଭେ ଯଥା ମଣି    ଗରଳୋଗ୍ର ଫଣୀ-ରମଣୀ    ଉତ୍ତମଅଙ୍ଗେ,
ସେ ବୀର,
ରତ୍ନ ଶିରସ୍ତ୍ରାଣେ ମଣ୍ଡି ଶିର,    ଧରି ଉଗ୍ରତେଜ କି ମିହିର । ୧୮
ଭାସ୍ୱର ଶୀର୍ଷକ    ଭାସ୍ୱର କଞ୍ଚୁକ    ଭାସ୍ୱର ନାନା ଆୟୁଧ,
ଶୋଭିଲା ତା ଅଙ୍ଗେ    ରଣଙ୍କରେ ରଙ୍ଗେ    ଦୃଷ୍ଟିପଥ କରି ରୋଧ,
ହେ ବୁଧେ !
ଦେଖି ଜରାସନ୍ଧକୁ ସନ୍ନିଧେ, କଲେ ଜୟଶବ୍ଦ ଯେତେ ଯୋଧେ । ୧୯

---

( ୧ ) ସେହ୍ଵାର-ଶ୍ୱେତବର୍ଣ୍ଣ ଅଶ୍ୱବିଶେଷ

ଚଳିଲା ବାହିନୀ ଧରିଲା ଅବନୀ ବରଷାଗଗନ ଛବି,
ମତ୍ତଦନ୍ତୀଦଳ ଜଳଦ ପଟଳ ଅସ୍ତ୍ର ଶସ୍ତ୍ର ଇନ୍ଦ୍ର ଧନୁ ପରି,
ହେ ଇନ୍ଦୁ,
ଅସ୍ତ୍ର ଝଲକ ଚପଳା ହୋଇ, ରଥଘୋଷ ବୃଂହଣ ମନ୍ଦ୍ରହିଁ । ୨୦

ଉଜ୍ଜ୍ୱଳ ସେହାର ବାର ବାର ଯେହ୍ନେ ବଳକ୍ଷ ବଳାକାପନ୍ତି,
ଧୀରେ କଳନାଦ କରଣ ବାରିଦ-ପଟଳ ତଳେ ଶୋଭନ୍ତି,
ଯେ ମାତ,
କେତୁ ଗୃହକଚସ୍ତ୍ର ଉଡ଼ନ୍ତି, 'ପଥ' 'ପଥ' ନିସ୍ୱନ କରନ୍ତି । ୨୧

ରକ୍ଷ ପତାକିନୀ କମ୍ପାଇ ମେଦିନୀ ପ୍ରବେଶ ମଥୁରା ପାଶେ,
ଏହି ସମାଚାର ପରସ୍ପର ଗୁର କଲେ ଧାଇଁ ଉର୍ଦ୍ଧ୍ୱଶ୍ୱାସେ,
ସେ ହାସେ,
ବେଗେ ଯାଦବେ କୃଷ୍ଣ ଆଦେଶେ, ଯୁଦ୍ଧେ ବାହାରିଲେ ବୀରବେଶେ । ୨୨

ନଗର ପ୍ରାନ୍ତର ସମରଲହରୀ ଖେଳିଲା ଅତି ପ୍ରବଳେ,
ବାଦନ ଶବଦ ରଣଶୃଙ୍ଗ ନାଦ ଦାରିଲା ନଭକୁ ବଳେ,
ସେ ବେଳି,
ପତାକିନୀ ହେଲେ ସମ୍ମୁଖିନୀ, ଭେଟିଲା ଭେଟି କି ତାଣ୍ଡବେଣୀ । ୨୩

ବେଳି ସେନା କେବେ ପ୍ରବଳ ଅରବେ ପ୍ରସାରିତ ଅକୁଞ୍ଚିତ,
କେବେ ସ୍ତମ୍ଭାକାରେ କେବେ ଚକ୍ରାକାରେ କେବେ ସୂଚୀ ପରି ସ୍ଥିତ,
ସେ କେବେ,
ଯଥା କାଳବାଡ଼ ମହାର୍ଣ୍ଣବେ, କେବେ ଭାଗ ଭାଗ ଠାବେ ଠାବେ । ୨୪

ସମର ପ୍ରାଙ୍ଗଣେ ଦନ୍ତୀଗଣ ଯେହ୍ନେ ଚଳ ଅଚଳ-ପ୍ରାକାର,
ନଭେ ପକ୍ଷୀପନ୍ତି ପରିପ୍ରାୟେ ଚଳନ୍ତି ପ୍ରଖର ତୁରଙ୍ଗବାର,
ସେ ଧୀରେ,
ଶବାଚ୍ଛାଦିତ ରଣଭୂମିରେ, ଯେହ୍ନେ ନିଷାଦୀ ସାଦୀ ବଧିରେ । ୨୫

ଅୟୁଧ ଝଂଝଣ   କୁଞ୍ଜର ବୃଂହଣ   ବୀର ଭୈରବହୁଙ୍କାର,
ବାଜୀ ହ୍ରେଷାସ୍ୱର   ରଥର ଘର୍ଘର   ପ୍ରବଳ ଧନୁଷ୍ଟଙ୍କାର,
ସେ ସ୍ଥଳେ,
ବାୟୁ ରଣିକି ଅଥୟ କଲେ,   ଦୟା କ୍ଷମା ତହୁଁ ବେଗେ ଗଲେ । ୨୬

ଅରାତିଙ୍କି ଲକ୍ଷ୍ୟ   କରି ଲକ୍ଷ ଲକ୍ଷ   ଯୋଦ୍ଧା ଧନୁଷ୍ପାଣି ହୋଇ,
ଘୋର ଶିର ଘୋର   କରନ୍ତି ହୁଙ୍କାର   ବାଣ ଅକର୍ଣ୍ଣ ପୂରାଇ,
ସ୍ୱ ରବେ,
ଦୃଢ଼େ ଦଂଶି ନିଜ ରଦଚ୍ଛଦେ,   ହୋନ୍ତି ଅଗ୍ରସର ପଦେ ପଦେ । ୨୭

ଅଚ୍ଛାଦି ଅସଂଖ୍ୟ   ଶରେ ଅନ୍ତରୀକ୍ଷ   ଯଥା ଗରୁତ୍ମାନ ଅନ୍ଧ,
ଭ୍ରମିଲା ଜିଘାଂସା   ସହ ପ୍ରତିହିଂସା   ରଣେ ଯୋଦ୍ଧାମୂର୍ତ୍ତି ଗ୍ରନ୍ଥ,
କେ ବୀର,
ପଡ଼େ ଭୂମିରେ ହରାଇ ଶିର,   ପାଡ଼େ କେ ଅରି ଅଙ୍ଗ ମହୀର । ୨୮

ଯୋଦ୍ଧାମାନଙ୍କର   ମୁଖ ବର୍ମ ଚର୍ମ   ଅସି ରଞ୍ଜିତ ଶୋଣିତେ,
ସମର ବ୍ୟାଜେ କି   ଫଗୁ ଖେଳୁଛନ୍ତି   ବସନ୍ତେ ଅଗ୍ରହ ଚିତ୍ତେ,
ଦ୍ୱି କର,
ରକ୍ତ ପୋଛୁ ନ ଲଭନ୍ତି ଉର,   ଶିରୁଁ ଝରେ ତ୍ରୁଣ୍ଡେ ରକ୍ତଝର । ୨୯

ନିଜ ରକ୍ତପାନେ   ନାଶନ୍ତି ସେମାନେ   ନିଜ ପ୍ରବଳ ପିପାସା,
ନିଜ ସୃକ୍କଣୀରେ   ଗୁଳି ଜିହ୍ୱା ଖେଳେ   ଭୁଲି କେବଳ ଜିଘାଂସା,
ସେ ସ୍ଥାନେ,
ମଗ୍ନ ବୈରୀ ମର୍ମସ୍ଥଳ ଧ୍ୟାନେ,   ଚିତ୍ତ ମାତ୍ର ପ୍ରତିଶୋଧ ଦାନେ । ୩୦

ଉଠେ ବୀରନାଦ   ଉଠେ ଆର୍ତ୍ତନାଦ   କେହି କାହାକୁ ନ ଭାଳେ,
ଅରାତି ଅଡ଼କୁ   ଝାମ୍ପି ପଡ଼ୁଛନ୍ତି   ଆୟୁଧ ଗୁଳି କରାଳେ,
ସେ ରଣେ,
ନୃତ୍ୟ କରନ୍ତି କବନ୍ଧଗଣେ,   ଶବଗଣ ଦଳିତ ଚରଣେ । ୩୧

ଏରୂପେ ଉଠିଲ   ବେନି ବଳେ ମହାସମର ଘାତ ଶଘାତ,
ଭୀଷଣ ବାରଧି   ସଙ୍ଗରେ ଶବାଦୀ   ହେଲା କି ପ୍ରଚଣ୍ଡ ବାତ,
ଯେ ସାଦୀ,
ହୁଏ ସାଦୀ ସଙ୍ଗରେ ବିବାଦୀ,   ଯୁଝନ୍ତି ନିଷାଦୀ ସଙ୍ଗେ ନିଷାଦୀ । ୩୨

ଜମ୍ବୁକାଦ କରି   ନାନା ଶବାହାରୀ   ଜନ୍ତୁ ଅସି ପଳେ ପଳେ,
ଶବକୁ ଆନନ୍ଦେ   ଭୁଞ୍ଜି ରତ ଦ୍ୱନ୍ଦ୍ୱେ   ଯଥା ସମରନ୍ତ ମଣ୍ଡେ,
ସେ ସର୍ବେ,
କରି ପ୍ରକଟ ବିକଟ ରବ,   କରି ଶବମାଂସେ ମହୋତ୍ସବ । ୩୩

ଜରାସନ୍ଧ ସଙ୍ଗେ   ଗତ ରଣରଙ୍ଗେ   ମହାବଳ ଉଗ୍ରବଳ *
ପ୍ରଳୟର କାଳେ   ରତ ଯୁଦ୍ଧଗୋଳେ   ହେଲେ କି କେତୁ ମଙ୍ଗଳ,
ସେ ବେନି,
ଯୁଦ୍ଧ କଲେ ନାନା ଶସ୍ତ୍ର ଘେନି,   ବୀରନାଦେ କମ୍ପାଇ ଅବନୀ । ୩୪

ପୁଣି ବେନି ଯୋଧ   କଲେ ମଲ୍ଲଯୁଦ୍ଧ   ଅସ୍ତ୍ର ଶସ୍ତ୍ର ରଥ ଛାଡ଼ି,
ମୁଣ୍ଡେ ମୁଣ୍ଡ ପିଟି   ଉଣ୍ଟିକି ଅଙ୍କଟି   ଏକ ଅନ୍ୟେ ବସେ ମାଡ଼ି,
କେ ବଳେ,
ମାରେ ବଜ୍ରମୁଷ୍ଟି ବକ୍ଷସ୍ଥଳେ,   ଛାଡ଼ି ହୁଙ୍କାର ନାଦ ପ୍ରବଳେ । ୩୫

ବାହୁରେ ବାହୁକୁ   ପାଦରେ ପାଦକୁ   ଛନ୍ଦ ଛଳେ ଯାନ୍ତି ପଡ଼ି,
ପୁଣି ଉଠିକରି   ଏକ ଅନ୍ୟେ ଧରି   ହୋ[illegible] କଚଡ଼ା କଚଡ଼ି,
ସେ ଛଳେ,
ପାଦ ମୁଷ୍ଟି ଛାଡ଼ି ମର୍ମସ୍ଥଳେ,   ଗଡ଼ାଗଡ଼ି ଯଥା ଚକ୍ର ଚଳେ । ୩୬

ହଳୀ ରକ୍ଷ ପରେ   ପଡ଼ିଲେ କ୍ରୋଧରେ   ଯଥା କ୍ଷୁଧିତ କେଶରୀ,
ପଡ଼େ ତକ୍ଷଣେରେ   ନିନାଦ ଗମ୍ଭୀରେ   ବଜ୍ରଦନ୍ତ କଡ଼ମଡ଼ି,
ସେ ଉଚ୍ଚେ,
ପିଟି ଧରାତଳ ଦୀର୍ଘପୁଚ୍ଛେ,   ସ୍ଫୀତ କରଣ କେଶର ଗୁଚ୍ଛେ । ୩୭

---

* ବଳରାମ

ଯୋଦ୍ଧା ବେନି ବଳେ   ସମର ତେଜିଲେ   ରହିଲେ ଦର୍ପଙ୍କ ପର,
ବଜ୍ର ମୁଷ୍ଟିଘାତ   ପାଇ ରକ୍ଷନାଥ   ରକତ ସ୍ରୋତ ଉଗାର,
ସେ ହାର,
ଗଲ ପଳାଇ ନ ରହି ପାର,   ରଣେ ଭଙ୍ଗ ଦେଲେ ଯାଦବାର । ୩୮
ମଗଧଭୂପାଳ   ହାର ବେଳୁଁ ବେଳ   ପୁଣି ପୁଣି ଦେଲା ଧାଡ଼ି,
ମଧୁପୁର ଜନେ   ବିଗୁରିଲେ ମନେ,   ଯିବାକୁ ମଥୁରା ଛାଡ଼ି,
ସେ ତ୍ରାସେ,
ସୁଖେ ରହି ନ ପାରିଲେ ବାସେ,   ହୋଇ ଅଶକ୍ତ ଶତ୍ରୁ ବିନାଶେ । ୩୯
ସମିତି ରଚନ   କଲା ଉଗ୍ରସେନ   ଚିନ୍ତି ଅରିବଧୋପାୟ,
କରି ସମ୍ବୋଧନ   କହିଲେ ବଚନ   ତାଙ୍କୁ ପ୍ରଭୁ ଦେବରାୟ,
"ମୁଁ ଜାଣେ,
ବଧ ନୋହିବ ମଗଧରାଣେ,   ଚାଲ ରହିବା ଅଗମ୍ୟ ସ୍ଥାନେ ।" ୪୦
ତାଙ୍କ ବଦନ   ଅନାଇ ବଚନ   ଭାଷିଲେ ପୁଣି କେଶବ,
ନଭେ ରବି ଦୃଶ   ମଣ୍ଡି ସିନ୍ଧୁଦେଶ   ସାଗର ଶୋଭା ଗୌରବ,
ହେ ହଳି !
ଅଛି କୁଶସ୍ଥଳୀ ନାମେ ସ୍ଥଳୀ,   ସଉନ୍ଦର୍ଯ୍ୟେ ସୁରପୁରୁଁ ବଳି । ୪୧
ଚାଲ ତହିଁ ଯିବା   ବସତି ସ୍ଥାପିବା   ତେଜି ଏ ମଧୁନଗର,"
ଅଗ୍ରଜରେ ଅତି   ଦେଖାଇ ସମ୍ମତି,   ଭାଷିଲେ ସଭ୍ୟନ୍ନକର,
"ହେ ଦେବ !
ତହିଁ ରହିଲେ ମଙ୍ଗଳ ହେବ,   ତହିଁ ଯିବ ନାହିଁ ପୂର୍ବଦେବ ।" ୪୨
ମଧୁପୁର ଜନେ   ବିଷାଦ ବଦନେ   ମଧୁପୁର ପରହରି,
ଦ୍ୱାରକା ଗମନ   କଲେ ପରଦିନ   ଧେନୁ ସଙ୍ଗେ ହଳୀ ହରି,
ହେ ଜନ !
ହେଉ ଅବିରତେ ତୁମ୍ଭ ମନ,   ଚିନ୍ତାମଣି ଚରଣେ ମଗନ । ୪୩



# ଚତୁର୍ବିଂଶ ଛାନ୍ଦ

ରାଗ—ବଙ୍ଗଳାଶ୍ରୀ

## ଗୋପୀ ଗୋପାଳମାନଙ୍କୁ ଦ୍ୱାରକା ନେବାପାଇଁ କୃଷ୍ଣଙ୍କର ଦୂତ ପ୍ରେରଣ

ବିରହ-ହୁତାଶ   ହେଲା କ୍ରମେ ହ୍ରାସ   ବ୍ରଜବାସିଙ୍କ ମାନସେ,
ବିଚ୍ଛେଦଯନ୍ତ୍ରଣା   ହେଲା କ୍ରମେ ଊଣା   ବିଧାତା ନିୟମବଶେ । ୧
ସମୟର ସ୍ରୋତେ   ଭାସି ଅବିରତେ   ଗମେ ସୁଖ ଦୁଃଖ ବେନି,
ପ୍ରଶମଇ ତାଳ   ସନ୍ତାପ-ଗରଳ   ମହାସୁଧାରସ ଦେନି । ୨
କାଳକ୍ରମେ ଶ୍ୟାମ   ତେଜି କଂସଧାମ   ଦ୍ୱାରକା କଲେ ବସତି,
ଦ୍ୱାରକାଭୁବନେ   କଲେ ଉଗ୍ରସେନେ   ଯାଦବକୁଳ ନୃପତି । ୩
ପୂର୍ବକର୍ମ ଦେନି   ଗୋପନେ ରୁକ୍ମିଣୀ   କୃଷ୍ଣଙ୍କୁ କଲେ ବରଣ,
ତେଣୁ ଚକ୍ରପାଣି   ଗୋପନେ ରୁକ୍ମିଣୀ   ଆଣିଲେ କରି ହରଣ । ୪
ରୁକ୍ମିଣୀଙ୍କ ସହ   କେଶବ ବିବାହ   ଲଗ୍ନକାଳ ହେଲା ସ୍ଥିର,
ହେଲା ଦ୍ୱାରବତୀ   ସୁମଣ୍ଡିତା ଅତି   ଜିଣି ବାଣୀଦେବୀ ଗିର । ୫
ସଉଧମାଳିନୀ   ବିଭବଶାଳିନୀ   ନଗରୀ ଉତ୍ତୋଳି ମୁଖ,
ବାରିଧି-ଦର୍ପଣେ   ନିଜ ବଦନନେ   ଦେଖିଣ ଲଭିଲା ସୁଖ । ୬
ସୁବର୍ଣ୍ଣସଉଧ—ଶିରେ ନାନାବିଧ   କେତୁଚୟ ଶୋଭାକରେ,
ଅମର ବିମାନସମୂହ ଯେସନ   ହିମାଦ୍ରି ଶୃଙ୍ଗନିକରେ । ୭
ରାଜପଥ ପାଶେ   ମନୋହର ଦଶେ   ରଚିତ ତୋରଣଚୟ,
ସାଧି ନେତ୍ରପ୍ରୀତି   ନଭେ ପନ୍ତି ପନ୍ତି   ଶକ୍ରଚାପ କି ଉଦୟ ? ୮
ମଙ୍ଗଳବାଦନ   ବାଜି ଘନ ଘନ   କମ୍ପାଇଲା ଦିଗାବଳୀ,
ଶଙ୍ଖ ଭେରୀ ତୂରୀ   ମୁରଲୀ ମହୁରୀ   ବାଜିଲା ତା ସଙ୍ଗେ ମିଳି । ୯
ସହ ନାରିକେଳ   ପୂଗ ଚୂତଦଳ   ମିଶିଣ କୁସୁମହାରେ,
ହେମକୁମ୍ଭଚୂଳେ   ରମ୍ଭା ତରୁମୂଳେ   ବିରାଜିଲେ ଦ୍ୱାରେ ଦ୍ୱାରେ । ୧୦

ପ୍ରଫୁଲ୍ଲବଦନା ସୁରମ୍ୟବେଶିନୀ ଦୋଳାଏ ପୁରି ଅଙ୍ଗୁଳି,
ବାଚ-ସୁଧାପ୍ରସୂ ରସନାକୁ ଅଶୁ ଗୁଳିଦେଲେ ହୁଳହୁଳି । ୧୧
ଗାଇଲେ ଗାୟକ ନାଚିଲେ ନର୍ତ୍ତକୀ ମୁଖର ବନ୍ଦୀସକଳ,
ଗାଇଲେ ମଙ୍ଗଳ ଜଗାରେ କି କଳ ଖଣ୍ଡାଧାର ରମ୍ୟାଚଳ[1] । ୧୨
ବାଜୀପୃଷ୍ଠେ ସାଦୀ କୁଞ୍ଜରେ ନିଷାଦୀ ନାନାବେଶେ ଶୋଭିବନ,
ଅସି ଯୂଥ ଯୂଥ ରଙ୍ଗେ ରାଜପଥ ମଣ୍ଡିଲେ ମୋହି ନୟନ । ୧୩
ପଢ଼ିଲେ ଭୂସୁରେ ବେଦ ଉଚ୍ଚସ୍ୱରେ ନାନା ଛନ୍ଦେ ନାନା ତାନେ,
ବସି ପଦ୍ମାସନେ ତୋଷି ହୁତାଶନେ ଅପ୍ରମିତ ହବିଦାନେ । ୧୪
କେ କହିଲ, 'ଆସ' କେ କହିଲ, 'ଯାଅ' ପଡ଼ିଲା ଯେ ଡାକ ହାକ,
ଗଲେ ଦୂତଗଣ ଦେଇ ନିମନ୍ତ୍ରଣ ଚିଠାଉ ଲଡ଼ୁ ଗୁବାକ । ୧୫
ବରଜଜନଙ୍କୁ ଦେଇ ଅସିବାକୁ ଉଦ୍ଧବ କୃଷ୍ଣ ଆଦେଶେ,
ବସିଣ ରଥରେ ଅତି ତରତରେ ବାହାରିଲା ବ୍ରଜଦେଶେ । ୧୬
ଉଦ୍ଧବ ହରଷେ ପ୍ରଫୁଲ୍ଲମାନସେ ପ୍ରବେଶି ନନ୍ଦସଦନେ,
ନନ୍ଦ ଯଶୋଦାର ବନ୍ଦିଣ ପୟର ବସିଲ ଦିବ୍ୟଆସନେ । ୧୭
ଦମ୍ପତିଯୁଗଳ ପୃଚ୍ଛିଲେ କୁଶଳ ଉଦ୍ଧବ ନିକଟେ ବସି,
ଉଦ୍ଧବ ବହନ କଲା ନିବେଦନ ବଚନ-ସୁଧା ବରଷି । ୧୮
"ରୂପଗୁଣେ ଧନ୍ୟା କୁଣ୍ଡୀରାଜକନ୍ୟା ନାମ ତାଙ୍କର ରୁକ୍ମିଣୀ,
ବରିଲେ ଗୋପତେ ମୁରଲୀବଦନେ ହୋଇଣ ଅନୁରାଗିଣୀ । ୧୯
ସ୍ୱୟମ୍ବର ଦିନ ତୁମ୍ଭର ନନ୍ଦନ ବରଣଚିହ୍ନ ପାଇ,
ତାଙ୍କୁ ବଳେ ହରି ଆଣିଲେ ସ୍ୱପୁରୀ କୁଣ୍ଡୀରାଜପୁରେ ଯାଇ । ୨୦
ଶୁଭପରିଣୟ ହେବାର ସମୟ ଅଳପ ଦିବସ ଅଛି,
କୃଷ୍ଣଙ୍କ ବଚନେ ତେଣୁ ଗୋପଜନେ ନେବାକୁ ମୁଁ ଆସିଅଛି ।" ୨୧
ନନ୍ଦ ଯଶୋଦାର ସୁଖ-ପାରାବାର ଉଚ୍ଛୁଳି ଉଠିଲା ମନେ,
ଅତି ବେଗ ଧରି ଆନନ୍ଦ-ଲହରୀ ଖେଳିଲା ଅସି ବଦନେ । ୨୨

---

(୧) କେଉଁଝରଷ୍ଟେଟସ୍ଥ ଖଣ୍ଡାଧାର ନାମକ ପର୍ବତରେ ଗୋଟିଏ ଜଳପ୍ରପାତ ଅଛି

ହେଲା କିଛି କ୍ଷଣ ଭାବଶୂନ୍ୟ ମନ ନଇଲା ମୁଖେ ବଚନ,
ଆନନ୍ଦାଶ୍ରୁଧାର ନନ୍ଦ ଯଶୋଦାର ପ୍ଲାବିଲା ଗଣ୍ଡ ନୟନ । ୨୩
ଦେଖୁଛନ୍ତି କିସ ଶୁଣୁଛନ୍ତି କିସ କ୍ଷଣେ ନ ପାରିଲେ ଜାଣି,
ଆନନ୍ଦ ଉଚ୍ଛ୍ୱାସ ହେଲଁ ଅଳ୍ପ ହ୍ରାସ ସଂଜ୍ଞା ଲଭି ବ୍ରଜରାଣୀ । ୨୪
ଅତି ବ୍ୟଗ୍ରଭାବେ ଗୃହିଣୀ ଉଦ୍ଧବେ ଅଶ୍ରୁଧାର ପୋଛି କରେ,
ସୁଖପୂର୍ଣ୍ଣମନେ ଆଗ୍ରହ ବଚନେ ପୃଚ୍ଛିଲେ ଗଦ୍‌ଗଦସ୍ୱରେ । ୨୫
"କହ ବାର୍ତ୍ତାବହ ! ସତ୍ୟ କରି କହ ପ୍ରତୀତ ନୋହୁଛି ମନେ,
ସତେ କି ମୁଁ ପୁଣି ଚିରଦୁଃଖିନୀ ଦେଖିବି ମୋ ନବଘନେ ? ୨୬
ସତେ ଦେଖିବି କି ମୋ କଳାନିଧିକି ପାସୋରିବି ସବୁ ଦୁଃଖ ?
ଅଛି କି କପାଳେ ନିରେଖିବି ତୋଳେ ପୁତ୍ରବଧୂ ଶଶି-ମୁଖ ?" ୨୭
ଉତ୍ତରିଲା ଦୂତ, "ସନ୍ଦେହ ନ କର କହୁଛି ମୁଁ ସତ୍ୟବାଣୀ,
ତୁମ୍ଭ ବିବାପଥ ନିରେଖି ନିରତ ବସିଛନ୍ତି ବେଣୁପାଣି ।" ୨୮
ଶୁଣି କହେ ନନ୍ଦ, "ହେବ ଏ ସମ୍ବନ୍ଧ ଆମ୍ଭ କୁଳକୁ ଦୂଷଣ,
ଆମ୍ଭେ ଅଟୁଁ ବୈଶ୍ୟ କ୍ଷତ୍ରିୟ ନରେଶ ଏ ବିବାହ ଅସବର୍ଣ୍ଣ । ୨୯
ନରେଶ ଦୁହିତା ହୁଅନ୍ତି ଗର୍ବିତା ବିଶେଷେ ବିଳାସଯୁତା,
ଗୋପ ଗୃହକାର୍ଯ୍ୟେ ଅପଟୁ ସହଜେ ଅଟନ୍ତି ନୃପତିସୁତା । ୩୦
ଅଛନ୍ତି ରୂପସୀ ଯେସନେ ଉର୍ବଶୀ ଗୋପକନ୍ୟା ଅଗଣନ,
କରୁଛୁ କିପାଇଁ ଆମ୍ଭର କହ୍ନାଇ ଏ ଅବିଧି ସଙ୍ଘଟନ ?" ୩୧
ଗୋପବର ବାଣୀ କ୍ରୋଧମନେ ଶୁଣି କହିଲେ କୋପେ ଯଶୋଦା,
"ହେ ଗୋପବଲ୍ଲଭ ! କିସ କର ଲୋଭ କୁଳକୁ ଦେଖି ସର୍ବଦା ? ୩୨
ମୋ କାହ୍ନୁ ସଙ୍ଗରେ ଥିବେ ବୁଧ ନରେ ସାକ୍ଷାତେ ବିଦ୍ୟାର ସ୍ତୂପ,
କେବେ ପ୍ରାଣନାଥ ହୋଇଲ ପଣ୍ଡିତ କହୁଛ ବାଣୀ ଏରୂପ ? ୩୩
ଭାଗ୍ୟେ ଥିଲେ ସିନା ହେବ ରାଜକନ୍ୟା ଲଭି ପୁତ୍ରବଧୂ ରୂପେ,
ତୁମ୍ଭେ ପଛେ ରହ ଗୃହେ ମୁଁ ନିଶ୍ଚୟ ନ ରହିବି ପୋଡ଼ା ଗୋପେ ।" ୩୪
କହେ ନନ୍ଦ ଶୁଣି, "ତୁମ୍ଭେ ତ ରମଣୀ ନାହିଁ ଗୋ ତୁମ୍ଭଙ୍କୁ ଜଣା,
କି ସ୍ଥିତିସ୍ଥାପକ ଅଟଇ ଯେତେକ ବ୍ୟବସ୍ଥାପତ୍ରରସନା ।" ୩୫

ବ୍ୟଗ୍ରଭାବେ ରାଣୀ   ପୁଣି ନନ୍ଦରାଣୀ   କହିଲେ ନନ୍ଦକୁ ଚାହିଁ,
"ଏ ସୁସମାଚାର   ନଗରେ ପ୍ରଚାର   କର ଡଗର ପଠାଇ । ୩୬
ନ ପାହୁଣୁ ନିଶି   ବ୍ରଜଜନବାସୀ   ସଜ୍ଜା ସାରି ଯେ ଯାହାର,
ଉଷା ଆଗମନେ   ଦ୍ୱାରକାଭୁବନେ   ଯିବାକୁ ହେବେ ବାହାର । ୩୭
ଗଣକେ କହନ୍ତି   ଉଷାଯାତ୍ରା ଅତି   ଅଟଇ ମଙ୍ଗଳକର,
ହେ ଗୋପବଲ୍ଲଭ ! କ୍ଷଣେହେଁ ବିଳମ୍ବ   ଏ ଶୁଭକାର୍ଯ୍ୟେ ନ କର ।" ୩୮
ନନ୍ଦର ଆଦେଶେ   ବେଗେ ଗୋପଦେଶେ   ଘୋଷଣା ଦେଲା ଡଗର,
ଉଚ୍ଛୋଳି ଲହରୀ   ପ୍ଲାବି ଗୋପପୁରୀ ଖେଳିଲା ସୁଖ-ସାଗର । ୩୯
ଗୋପ ଗୋପୀ ବେଗେ   ମାନସ ଉଦ୍‌ବେଗେ   କଲେ ଯିବା ସଜ୍ଜାମାନ,
ନିଦ୍ରା ବ୍ରଜ ଛାଡ଼ି   ନିରାଶେ ବାହୁଡ଼ି   ଗଲା ନ ପାଇଣ ସ୍ଥାନ । ୪୦
କେଶବ ଚରିତ   ଅମିୟ-ପୂରିତ   ପିଅ ବୁଧେ ! ଅବିରତ,
ହୋଇ ଚିନ୍ତାମଣି—ଚରଣ-ନଳିନୀ—ମକରନ୍ଦ ପାନେ ରତ । ୪୧



## ପଞ୍ଚବିଂଶ ଛାନ୍ଦ

ରାଗ—ରାମକେରୀ *

### ଗୋପାଳମାନଙ୍କର ମଥୁରା ଗମନାର୍ଥ ସଜ୍ଜା

ଏକାନ୍ତ ଉତ୍ସୁକମନରେ ସର୍ବ ବ୍ରଜବାସୀ,
କଲେକ ଦ୍ୱାରକା-ଗମନ-ସଜ୍ଜା ଉଲ୍ଲାସେ ଭାସି । ୧
ଲାଗିଗଲା ଗୋଳ ଚହଳ ବ୍ରଜେ ପ୍ରତି ସଦନେ,
ଅଶନ-ଶୟନ-ବାସନା ବୃଥା ଜଣିଲା ମନେ । ୨
'ଚାଲ ହେ' 'ଆସ ହେ' 'ରହ ଗୋ' ଆଦି ଶବଦମାନ,
ଗହଳେ ଉଠି ନ ପାଇଲେ କର୍ଣ୍ଣକୁହରେ ସ୍ଥାନ । ୩

* "ଯେଉଁ ଖେଳରାଜ ବ୍ରଜମାନ ମକରଧ୍ୱଜେ" ଉସେବ ଦାଶବଲୀ

ପାତ୍ରରେ କେ ଭରି ରଖିଲା ଖାଦ୍ୟ ନାନାପ୍ରକାର,
କେହୁ ସଜାଡ଼ିଲା ଯାଉଁଳି କେହୁ ବୋଝ ବା ଭାର । ୪
କେହୁ ସଜାଡ଼ିଲା ଶକଟ କେହୁ ଉଷ୍ଟ୍ର ମହିଷ,
କେହୁ ବଳିବର୍ଦ୍ଦ କେହୁ ବା ଅଶ୍ୱ ସାଜେ ବିଶେଷ । ୫
କେ ବ୍ୟଗ୍ର ମଞ୍ଜୁଷା ଫେଡ଼ଇ କେହୁ ଫେଡ଼େ ପେଟିକା,
ବାଛୁ କେ ଘେନେ ଅଳଙ୍କାର କେହୁ ଧୋତ ଶାଟିକା । ୬
ପ୍ରଫୁଲ୍ଲ ମାନସେ ଗୋପୀଏ ରତ୍ନ ବେଶ ବିନ୍ୟାସେ,
କେ ସିଙ୍ଗାର ଗୃହେ ଗମଇ କେ ବା ତାଙ୍କର ପାଶେ । ୭
କେହୁ ତ ନୋହେ ଯେତେ ଅଜ ତାଙ୍କୁ ପଡ଼େ ଅଦର,
ଅଧୀର ତାଙ୍କ ମୁଖ ଜିହ୍ୱା ଖର ଚରଣ କର । ୮
'ମୋତେ ଅଗ' ବାଣୀ ବଦନେ ସିଙ୍ଗାରିଙ୍କି ଗୋପିକା,
ଘେରି ବସିଛନ୍ତି ମଧୁକୁ ଯେହ୍ନେ ମଧୁମକ୍ଷିକା । ୯
କେ ଅଣେ ସୁରଙ୍ଗ ସିନ୍ଦୂର କେହୁ କଜ୍ଜ୍ୱଳ ପାତ୍ର,
କେ ଆଣେ ନାନା ଅଙ୍ଗରାଗ ରଞ୍ଜିବାକୁ ସୁଗାତ୍ର । ୧୦
କେ ଅଣେ ଚନ୍ଦନ କସ୍ତୁରୀ ଅଣେ କେ ଗୋରୋଚନା,
ସୁଗନ୍ଧ ତୈଳ କଙ୍କତିକା କେହୁ ବିଧୁବଦନା । ୧୧
ମଣିମୟ ବେଣୀ ଲୋଟିଲ ପୃଷ୍ଠଦେଶେ କାହାର,
ସେ କି କାମ-ଫଣୀ ଖେଳୁଛି ଗର୍ତ୍ତମଧ୍ୟୁଁ ବାହାର । ୧୨
କୁଞ୍ଚିତ-କେଶ ମୂଳ କେହୁ ବାନ୍ଧି କଳକ ଗୁଚ୍ଛ,
ଦୃଷ୍ଟେ କେଶରାଶି ଶୋଭିଲା ଯଥା ମୟୂରପୁଚ୍ଛ । ୧୩
କେହୁ ସ୍ଥୂଳବେଣୀ ମୋଡ଼ିଣ ବିନ୍ୟାସିଲା କବରୀ,
କାମ-ଭୁଜଙ୍ଗେ କି ରଖିଲା ବଶେ ଯତନ କରି । ୧୪
କେ ଚଳ ଲୋଟଣୀ ଜୁଡ଼ାକୁ କେହୁ ଖୋସିଲା ଖୋଷା,
କେହୁ ନିବୀଡ ଲାକ୍ଷାରସେ ପାଦ ରଞ୍ଜିଲା ଯୋଷା । ୧୫
ରଖିଲେ ଅଙ୍ଗେ ନାନା ଭୂଷା ଯହିଁ ସ୍ଥାନ ଯାହାର,
ହେମଲତିକା କି ବହିଲା ଅଙ୍ଗେ କୁସୁମଭାର ? ୧୬

ବେଶ ଦେଖା ଦେଖି ହୁଅନ୍ତି ରାଧା ସଙ୍ଗିନୀ ସଙ୍ଗେ,
ଗୃହାନ୍ତି ନିଜର ବେଶକୁ ଦର୍ପଣେ ନାନା ଭଙ୍ଗେ । ୧୭
କେହୁ କହେ କର ଏମନ୍ତ କେହୁ କହେ ତେମନ୍ତ,
ପଣ୍ଡିତେ ଭାଷାକୁ କରନ୍ତି ସଂଶୋଧନ ଯେମନ୍ତ । ୧୮
ବେଶକାଳେ ବାଳୀ ଭାଳନ୍ତି, "ଧରି କେମନ୍ତ ବେଶ,
ରସରସିକେ ଭେଟିବ ତାଙ୍କୁ କହୁବ କିସ ?" ୧୯
କେ ଭାଳେ, "ତାଙ୍କୁ ମୁଁ କହୁବ ଅହେ କୁବୁଜାବନ୍ଧୁ !
ଏବେ ତ ବ୍ରଜ ଶୂନ୍ୟକରି ସବ ଯାଉଛୁ ମଧୁ ।" ୨୦
କେ ଭାଳେ, "ସମୀପେ ନ ଯିବ ଦୂରେ ଥିବ ମଉନେ,
ସେ ମୋତେ ଅବଶ୍ୟ ଲୋଡ଼ିବେ ପଦ ଥିବ ମୁଁ ମନେ ।" ୨୧
କେ ଭାଳେ "ନ ଡରି କହୁବ ଅହେ ଭ୍ରମରବର !
ଭୃଙ୍ଗ କପଟେ କରେ ସିନା ବାସିଫୁଲେ ଆଦର ।" ୨୨
ଏରୂପେ ନାନା ଭାବ ଗୋପୀ ଭାଳି ଭାଳିଣ ମନେ,
ରଚନ୍ତି ନାନା ବେଶ ଗୃହିଁ କୁତପୂର୍ଣ୍ଣ ନୟନେ । ୨୩
ପରମଉଲ୍ଲାସେ ବରଜପୁତେ ହୁଅନ୍ତି ସଜ,
ତାଙ୍କୁ ଅଙ୍ଗ ବଷ ସମାନ ଲାଗୁଅଛୁ ବରଜ । ୨୪
କ୍ଷୀର ସର ଦଧି ନବଣୀ ଅନ୍ନ ନାନା ବ୍ୟଞ୍ଜନ,
ପନ ପୁଡ଼ିଅରେ ବାନ୍ଧନ୍ତି କରି ଅତି ଯତନ । ୨୫
କେ ବୋଲେ, "ରଖୁଆଳସ୍ୱିକେ ଦେବ କରେ ଭୁଞ୍ଜାଇ,"
କେ ବୋଲେ, "ଏ ବନମାଳାକୁ ଦେବ ଜରେ ଲମ୍ବାଇ । ୨୬
ସଜବେ ଅମ୍ଭ ରାଜା ବାମେ ଶରଚ୍ଚନ୍ଦ୍ରମା ମୁଖୀ,
ଅମ୍ଭେ ରଖୁଆଳେ ହୋଇବା ତାଙ୍କ ଦର୍ଶନେ ସୁଖୀ ।" । ୨୭
କେ ବୋଲେ, "ଅମ୍ଭେ ଗୋପସୁତ ଶ୍ୟାମ ଯାଦବପତି,
ସଖାଭାବ ଧରି କେମନ୍ତେ ଯିବା ତାହାଙ୍କ କତି ? ୨୮
ଏକନେ ରହେ ଖଣି ମଧ୍ୟେ ବାଳ ସଙ୍ଗେ ଶ୍ରୀରଥ,
ଖଣିରୁ ବାହାର ହେଲେ ସେ ଲଭେ ରାଜମସ୍ତକ । ୨୯

ଅପଣା ସୀମାକୁ ଲଙ୍ଘିଲେ ସିନା ଘଟେ ବିପଦ,
ଅଚରଣ ସିନା ଉଚିତ ଗୃହ୍ନି ନିଜର ପଦ ।” ୩୦
କେ କହେ, “ତୁମ୍ଭର ନାହିଁ ତ କିଛି ବୁଦ୍ଧି ବିଚାର,
କେମନ୍ତେ ଲଭିବ ଦର୍ଶନ କୁଣ୍ଡୀବ୍ରଜକେଶୋର । ୩୧
ରହନ୍ତି ସେ ତ ଅବରୋଧେ ରହେ ବନ୍ଦୀ ଯେସନ,
ନ ପାନ୍ତି ତାଙ୍କର ଦର୍ଶନ ସର୍ବବ୍ୟାପୀ ତପନ ।” ୩୨
କେ କହେ, “ଅହା କି କଷଣ ହେବା ରାଜଦୁହିତା,”
କେ ପୃଚ୍ଛେ, “କିପାଁ ସେ ଲୁଚନ୍ତି କିପାଁ ହୁଅନ୍ତି ଭୀତା । ୩୩
ଚିରକାଳ ବନ୍ଦୀ ହେବାଠୁଁ ଭଲ ଜରାୟୂବାସ,
ଅଥବା ଭୂମିଷ୍ଠ ହେବାର ପୂର୍ବେ ଲଭିବା ନାଶ ।” ୩୪
କେ କହେ, “ଶ୍ୟାମ ତ ଅଟନ୍ତି ବ୍ରଜରାଜ-ସନ୍ତାନ,
ଏକଦିନ କରି ନାହାନ୍ତି ଅମ୍ଭଙ୍କୁ ତୁଚ୍ଛଜ୍ଞାନ ।” ୩୫
କେ କହେ, “ଯା ହେବ ତା ହେବ ଶ୍ୟାମ ସମୀପେ ଯାଇ,
ଆଲିଙ୍ଗନ ଦେଇ କହିବ ତାଙ୍କୁ, ‘ହେ ରାଜା ଭାଇ !’ ୩୬
ଏମନ୍ତେ ନାନା ଗଳ୍ପ କରି ଯେତେ ବରଜବାଳ,
ସଜ ହୋଇ ହାସ୍ୟ କୌତୁକେ ବସି କାଟିଲେ କାଳ । ୩୭
ଦ୍ୱାରକା ଗମନ ବାରତା ବ୍ରଜେ ହେଉଁ ପ୍ରଚାର,
ଚମକି ଶୁଣିଲେ ରାଧିକା ହୃଦ ନାଚିଲା ତାର । ୩୮
ତଉତର ସ୍ରୋତ ତା ଅଙ୍ଗେ କିବା କଲା ସଞ୍ଚାର ?,
ଶବମୁଖେ ଅବା ପଡ଼ିଲା ଝରି ଅମୃତଧାର ? ୩୯
ହୃଦୟୁ ଉଠିଲା ଉଚ୍ଛୁଳି କିନ୍ତୁ ସ୍ଥାନ ନ ପାଇ,
ଊର୍ଦ୍ଧ୍ୱେ ଉଠି କଣ୍ଠନାଳରେ ପରବେଶିଲା ଯାଇ । ୪୦
ହୋଇଲା ମାନସ ଚଞ୍ଚଳ ଯଥା ଶୈଳତଟିନୀ,
ସ୍ରୋତରେ ସେତୁକୁ ଭସାଇ ହୁଏ ସିନ୍ଧୁଗାମିନୀ । ୪୧
କୁଟିଳା ମିଳିଲା ସେକାଳେ ଆସି ଜନନୀ ପାଶେ,
ଗରଗର ମୁଖେ ଅରୁଣ ନେତେ କୋପବକାଶେ । ୪୨

ତର ଶୁଣି ନେତ୍ର ବୁଜାଇ ଉଚ୍ଚେ କହିଲା ବାଣୀ,
“ମାୟାବୀ ଚକ୍ରୀ ନନ୍ଦସୁତେ ମାତଃ ! ନାହିଁ କି ଜାଣି ? ୪୩
ରାଧାକୁ ସମୀପେ ନେବାକୁ କରୁଛି ସେ କୌଶଳ,
ସେ ପୁଣି ହେଉଛି ନରେଶ ତାକୁ ନାହିଁ ତ ବଳ । ୪୪
ନୁହଇ ରାଧିକା ସରଳା ସେ ତ ଅଟେ ଜଟିଳା,
କେମନ୍ତ କୌଶଳେ ସେ ମୋର ନେତ୍ରେ ଧୂଳି ଢାଳିଲା ? ୪୫
ରାଧାର ଅଙ୍ଗେ ନାହିଁ ସୁଖ ପଥେ କେମନ୍ତେ ଯିବ ?
ପଥକ୍ଲେଶ ସହି ନ ପାରି ତେଜି ପାରେ ସେ ଜୀବ । ୪୬
ନକୁଳ ଯଥା ସର୍ପୀସଙ୍ଗେ ତଥା ଶ୍ୟାମ ମୋ ସଙ୍ଗେ,
କେତେ ମୁଖଭଙ୍ଗି କରେ ସେ ମୋତେ ଦେଖିଣ ରଙ୍ଗେ । ୪୭
ଗାଳି ଦେଲେହେଁ ସେ ନିର୍ଲଜ୍ଜ ମୋତେ କରଇ ଟାହି,
ଜନନି ! ଦ୍ୱାରକା ନଗରେ କେବେଁ ମୁଁ ଯିବ ନାହିଁ । ୪୮
ରହୁତ ନିବାସେ ରାଧାକୁ ସୁଖେ ଘେନି ସଙ୍ଗରେ,
ନାହିଁ ମୋର କାର୍ଯ୍ୟ ଯିବାର ଦ୍ୱାରବତୀ ନଗରେ ।” ୪୯
କହିଲା ଦୂତୀ, “ନ ଅଣ ଗୋ ଯେମା ଏହା ବଚନେ,
ଅସମ୍ଭବ କଥା ସମ୍ଭବ ମାତ୍ର ତୁମ୍ଭର ମନେ । ୫୦
ତବାକୁ ଉତ୍ତର ପୁଚ୍ଛିବେ ବ୍ରଜବାସୀ ସକଳେ,
କି ଦୋଷେ ରହିବ ଗୃହରେ ବୋଲି ରାଧାକୁ ବଳେ ? ୫୧
ଏହା ଶୁଣି କିସ ଭାଳିବେ ନନ୍ଦ ଯଶୋଦା ମନେ,
କି କହିବେ ଶ୍ୟାମ, ଭାଳିବେ କିସ ବରଜଜନେ ?” ୫୨
ଚନ୍ଦ୍ରସେଣା ମାତା ଭାଷିଲ, “ଏହୁ କଥା ହୋଇବ,
କୁଟିଳା ରହିବ ସଦନେ ବଧୂ ସଙ୍ଗରେ ଯିବ ।” ୫୩
ରାଧାକୁ ଦେଇ ଏ ବାରତା ଦୂତୀ କହିଲା ହସି,
“ବେଗ ହୋଇ ବେଶ ସାର ଗୋ ଶ୍ୟାମପ୍ରୀତିଉଲ୍ଲସି ! ୫୪
ସୁକୁଜୀ ଅକୁଜୀ ବେନିଙ୍କ ହେବ ଏକତ୍ରେ ଠାବ,
ଦେଖାଯିବ କିଏ କରିବ ଶ୍ୟାମପୀରତି ଲଭ ?” ୫୫

କହିଲ ଶ୍ରୀମତୀ, "ଦୂତି ଗୋ ! ବେଶେ କି ପ୍ରୟୋଜନ ?
ବେଶେ ବନ୍ଧୁଙ୍କୁ ରଖିବାକୁ ନୋହେ ମୋହର ମନ । ୫୬
ସତତ ତାଙ୍କର ମୁଁ ହେବ ଏହି ମୋର କାମନା,
କି ଭୂଷଣ ସଖି ! ଦେନବ ବନ୍ଧୁ ମୋ ଶୋଭା ସିନା । ୫୭
ସେ ଭୂଷଣ ମୋର ହରିବ ହେଲି ହୀନବେଶିନୀ,
ସତେ କି ସେ ଭୂଷା ଦେନବ ମୁହିଁ ହତଭାଗିନୀ ? ୫୮
ଶ୍ୟାମପ୍ରୀତି ଭୁଞ୍ଜୁ କୁବୁଜା ତହିଁ ନାହିଁ ଭାବନା,
ବନ୍ଧୁଙ୍କୁ ଦେଖିବ ସେବକ ମୋର ଏହି କାମନା । ୫୯
କୁବୁଜାଟାରେ ତ ରହିଛନ୍ତି ବନ୍ଧୁଙ୍କ ସମାଦର,
କୁବୁଜାକୁ କେହ୍ନେ ସଜନ ! ମୁଁ ଗୋ କହିବ ପର ?" ୬୦
ଶୋକାନନ୍ଦଧାରା ରାଧାର ନେତ୍ରୁଁ ପଡ଼ିଲା ଖସି,
ହେଲା କି ପ୍ରାତେ କୌମୁଦୀ ଅରୁଣିମାରେ ମିଶି ! ୬୧
ସଖୀ ସହ ରାଧା ମନ୍ତ୍ରିଲେ ନାନା ସଜ୍ଜା କରଣେ,
ପୋଛୁଣ ନେତ୍ରୁଁ ଅଶ୍ରୁଧାରା ନିଜ ପିନ୍ଧାବସନେ । ୬୨
ଆଜି ନନ୍ଦପୁର ଆନନ୍ଦ କେବା ପାରିବ କହି,
କରନ୍ତି ନାନା ସଜ୍ଜାମାନ ନନ୍ଦ ଯଶୋଦା ରହି । ୬୩
ବିବିଧ ଖାଦ୍ୟ ସୁଧାମୟ ଆଣି ରଖନ୍ତି ଭାଣ୍ଡେ,
'ଆଣ,' 'ନିଅ,' 'ରଖ' ଶବଦ ଉଠେ ସଦାନନ୍ଦାତ୍ରେ । ୬୪
ସୁଭଦ୍ରାଙ୍କୁ ବେଶ କରନ୍ତି ପୁନପୁଣ ସିଙ୍ଗାରି,
ମନ୍ତ୍ରପୂତ ଅବା ହେଉଛନ୍ତି ପୂତ ଜାହ୍ନବୀବାରି । ୬୫
ଅମୂଲ୍ୟ ରତ୍ନମୟ ହାର ଶୁଭ୍ର ପୀତବସନ,
ଯଶୋଦା ରଖିଲେ ପେଟିରେ କରି ଅତି ଯତନ । ୬୬
ମାତାଙ୍କୁ ସୁଭଦ୍ରା ପୁଚ୍ଛିଲେ, "କିସ ହେବ ଏ ହାର ?"
ଭାଷିଲେ ଯଶୋଦା, "ତୋ ଭ୍ରାତୃଜାୟାଙ୍କୁ ଉପହାର ।" ୬୭
ବ୍ୟଗ୍ରଭାବେ ପୁଣି ପୁଚ୍ଛିଲ ଭଦ୍ରା ଚନ୍ଦ୍ରବଦନୀ,
"ଉପହାର ଭ୍ରାତୃଜାୟାଙ୍କୁ କିସ ହେବ ଜନନି ?" ୬୮

"ତୋ ଶ୍ରଦ୍ଧା ମମତା ଭକତ ତାଙ୍କ ମହୋପହାର,
କନିଷ୍ଠା ନଣନ୍ଦ ଯେଣୁ ତୁ କୁନ୍ତୀ ରାଜକୁମାରୀ ।" ୬୯
ଜନନୀ ବଚନ ଶୁଣିଣ ଭଦ୍ରା ମନେ ଆନନ୍ଦ,
ସବୁ ସଙ୍ଗୀ ସାଥ ଏକାଳେ ଆସି ମିଳିଲେ ନନ୍ଦ । ୭୦
କହୁଁ କହୁଁ ରାତି ପାହିଲା ସଙ୍ଗୀ ସାଥ ଯେତ୍କାର,
ବରଜବାସିଏ ଗୃହରୁ ହେଲେ କ୍ରମେ ବାହାର । ୭୧
ଶିବିକା ଶକଟ ତୁରଙ୍ଗ ଆଦି ବିବିଧ ଯାନ,
ଧୂରବାହୀ ପଶୁଗଣଙ୍କ ଦାଣ୍ଡେ ନୋହିଲା ସ୍ଥାନ । ୭୨
ଚଳିଲେ ସକଳେ ଚଳିଲେ ଅତି ଉତ୍ସୁକମନେ,
ଶୂନ୍ୟ ହେଲା ବ୍ରଜମଣ୍ଡଳ ମରୁଭୂମି ଯେସନେ । ୭୩
କେଶବଚରିତ ଅମୀୟ ପିଇ ଶ୍ରବଣପଥେ,
ବୁଧେ ! ଚିନ୍ତାମଣି ଚରଣ ଧ୍ୟାନ କର ନିରତେ । ୭୪



## ଷଡ୍‌ବିଂଶ ଛାନ୍ଦ

ରାଗ—ବସନ୍ତ, ଆଷାଢ଼ଶୁକ୍ଳ ବାଣୀ *

### ଗୋପାଳମାନଙ୍କର ଦ୍ୱାରକାରେ ପ୍ରବେଶ

କ୍ରମେ ପଥ ଲଙ୍ଘି ବରଜବାସୀ, ଦ୍ୱାରକାନଗରେ ମିଳିଲେ ଆସି,
କୃଷ୍ଣଦୂତଙ୍କୁ ମୁଖେ ସଙ୍ଗେ ଘେନି, ଆନନ୍ଦରେ ନନ୍ଦ ଯଶୋଦା ବେନି,
ହେଲେ ଅଗ୍ରସର, ଯେସନେ ପନ୍ଥ ବାଷ୍ପଶକଟର୧ । ୧
ତାଙ୍କ ପଛେ ଯେତେ ବ୍ରଜବାଳକେ, କଲେ ଗତି ମାତି ଅତିପୁଲକେ,
ବଜାଇ ଶିଙ୍ଗା ମୁରଲୀ କାହାଳୀ, ନାଚ ନାଚିଣ ଦେଇ କରତାଳି,
ନୋହିବ ତ କହି, କି ସୁଖେ ବାଳକେ ଯାଆନ୍ତି ବହି । ୨

---

* "ଘନେ ହୋଇଥିଲା ଘୋର ବରଷା" ଚୌପଦୀ ବା "ବକେ ବସିଥିଲା ଧ୍ରୁବ ଉପରେ" ବୈଦେହୀଶବିଳାସ । ୧) ରେଳଗାଡ଼ି

ବ୍ରଜବାଳ ପଛେ ବ୍ରଜକାମିନୀ, ଚଳିଲେ ସଧୀରେ ହଂସଗାମିନୀ,
ଅନନ୍ଦ-ତରଙ୍ଗ ଖେଳେ ପ୍ରବଳ, ନୟନ-ମୀନ ସନ୍ତରେ ଚଞ୍ଚଳ,
କି ଶୋଭା-ତଟିନୀ, ହେଉଛନ୍ତି ଶୋଭା-ସାଗର-ଗାମିନୀ । ୩

ସର୍ବଶେଷେ ଅନ୍ୟ ବରଜଜନେ, ଦେଖି ଦେଖି ନଗ୍ରଶୋଭା ନୟନେ,
ଅନନ୍ଦେ ହେଉଛନ୍ତି ଅଗ୍ରସର, ଘେନି ଧୂରବାଦ୍ୟ ପଶୁନିକର,
ଉତ୍ସୁକନୟନେ, ଦେଖନ୍ତି ଯାଦବେ ବରଜଜନେ । ୪

ଗବାକ୍ଷେ ପୁରନାରୀ ମୁଖଚୟ, ଶୋଭଇ ଯେସନେ ପଦ୍ମନିଚୟ,
ବ୍ରଜସୁନ୍ଦରୀଙ୍କି ଦେଖି ନୟନେ, ସେ ଭାଳନ୍ତି ବସି ଦୁଃଖିତମନେ,
ବରଜନଗର, ଅଟେ କି ପୁର-ସୁନ୍ଦରୀ ଅଧିକର । ୫

ବାଳକ ବାଳିକା ଯୁବା ଯୁବତୀ, ବୃଦ୍ଧ ବୃଦ୍ଧା ଛାଡ଼ି ନିଜର କୃତି,
ରାଜପଥରେ ବଞ୍ଚିଣ ନୟନ, ଦେଖନ୍ତି ହୋଇଣ ଏକାଗ୍ରମନ,
ବାଳକ ବାଳିକା, ଦାଣ୍ଡେ ଧାଇଁ କଲେ ଦେଖା-ଜୀବିକା । ୬

କ୍ରମେ କ୍ରମେ ସବୁ ବ୍ରଜନିବାସୀ, ସିଂହଦ୍ୱାର ପାଶେ ମିଳିଲେ ଅସି,
ଏ ବାର୍ତ୍ତା ପାଇ ଭୂପ ହୃଷୀକେଶ, ଅସିଲେ ଧରି ନଟବର ବେଶ,
ମନ୍ଦ ମନ୍ଦ ହାସ, କର କର ବିମ୍ବାଧରେ ପ୍ରକାଶ । ୭

ଗୁଞ୍ଜଅବତଂସେ କେକୀକଳାପ, ପଡ଼ିଛି ବାମକୁ ଢଳି ଅଳପ,
ଶ୍ରବଣମୂଳେ ମକରକୁଣ୍ଡଳ, ଉଜ୍ଜ୍ୱଳ ସିନ୍ଦୂରଫଳ ନାସାତଳ,
ବକ୍ଷେ ବନମାଳ, ମଳୟଜରେ ରଞ୍ଜିତ କପାଳ । ୮

କଟୀତଟରେ ରତନ କିଙ୍କିଣୀ, ମଧୁର ବାଜି ନିଏ ମନ କିଣି,
ପୀତ କାଛେଣୀକି ପୀତ ଉତ୍ତରୀ, କରେ ବଂଶୀ ଗୋପୀ-ଧୈର୍ଯ୍ୟ-କାତ୍ତରୀ,
ପାଦରେ ନୂପୁର, ଢାଳିଦିଏ ସୁଧା ବାଜି ମଧୁର । ୯

ଏମନ୍ତ ବେଶେ ତ୍ରିପୁରମୋହନ, ବ୍ରଜବାସିଙ୍କି ଦେଲେ ଦରଶନ,
ତାଙ୍କ ହୃଦୟ ଖେଳିଲା ଉଚ୍ଛ୍ୱାସି, ଦେଖିଲା କି ସିନ୍ଧୁ ପୂର୍ଣ୍ଣମୀଶଶୀ ?
ଏ ଦ୍ୱାରକାପୁରୀ, ଆଜି ଧରେ ବ୍ରଜଛବି ମାଧୁରୀ । ୧୦

ଲୋଭି ବ୍ରଜବାସୀ-ନେତ୍ର-ଚକୋର, ସୁଖେ ହର ଦୀର୍ଘ ପିପାସା ଦୂର,
ଆନନ୍ଦାଶ୍ରୁ ଛଳେ କରେ ଉଦ୍ଗାର, ପାନକୃତ ଅଜୀର୍ଣ୍ଣ ସୁଧାଧାର,
ସୁଧାଶନ ପାଇଁ, ମନ ନେତ୍ର ସଙ୍ଗେ ମିଳିଛି ଯାଇ । ୧୧

ଦେଖନ୍ତେ ଯଶୋଦା ଶ୍ୟାମବଦନ, ଧାଇଁ କୋଳେ ଧରି ଦେଲେ ଚୁମ୍ବନ,
ପୁଣ ପୁଣ ଚୁମ୍ବ ଦେଲେ ବଦନେ, ଆସି ପାଶେ ନନ୍ଦ ଆନନ୍ଦ ମନେ,
ଚୁମ୍ବ ଦେଇ ମୁଖେ, ଗୁଳିଲେ କର କୃଷ୍ଣ ଅଙ୍ଗେ ସୁଖେ । ୧୨

ଏ ପଛେ ମିଳିଲେ ତାଳାଙ୍କ ଆସି, ତାଙ୍କୁ ନନ୍ଦ ସୁଖାନନ୍ଦରେ ଭାସି,
କୋଳେ ଧରି ମୁଖେ ଦେଲେ ଚୁମ୍ବନ, ଯଶୋଦା ପୁଣି ଚୁମ୍ବିଲେ ବଦନ,
ଗଦଗଦେ ଭଣି, "କାହିଁ ଲୁଚିଥିଲ ମୋ ରତ୍ନ ମଣି !" ୧୩

ହସି ହସି ସେଠାରୁ ବେନଭୁଜ, ଗୋପବାଳ ମେଳେ ମିଳିଲେ ଯାଇ,
ତାଙ୍କୁ କୋଳ ଦେଇ ଗୋପବାଳକେ, ନାଚିଲେ ଘେରିଣ ଅତି ପୁଲକେ,
ବଂଶୀନାଦ କରି, ଦେଖ ବୁଧେ ! ଏ ଶୋଭା ନେତ୍ର ଭରି । ୧୪

ପିତା ମାତା ବ୍ରଜବାଳଙ୍କୁ ହରି, ଉଚିତ ବିଧାନେ ସନ୍ତୁଷ୍ଟ କରି,
ମିଳିଲେ ବ୍ରଜସୁନ୍ଦରୀଙ୍କ ପାଶେ, ବଚନ କହୁ ମନ୍ଦ ମନ୍ଦ ହାସେ,
ପ୍ରେମ ସମ୍ଭାଷଣେ, ମୋହିଲେ ବରଜ କାମିନୀଗଣେ । ୧୫

କେଶବ ନୟନ ମତ୍ତଭ୍ରମର, ସଞ୍ଚରିଣ ଚନ୍ଦ୍ରପାଶେ ପ୍ରଖର,
ଚୁମ୍ବିଣ ଗୋପୀଙ୍କ କୁସୁମାନନ, ପୁଣି ଲେଉଟି ଆସେ ଘନ ଘନ,
ଶ୍ରୀମତୀ ବଦନେ, ଭୃଙ୍ଗ ମାଳତୀ ପାଶକୁ ଯେସନେ । ୧୬

ଗୋପନେ ରାଧା ଗୁହେଁ ବେଳୁଁ ବେଳ, ତା ନେତ୍ର ହେଉଁ କୃଷ୍ଣନେତ୍ରେ ମେଳ
ଲଜ୍ଜା ମାନେ ହୁଏ ଅଧୋବଦନୀ, କଠିଣ କୋମଳ ଭାବକୁ ଘେନି,
ମେରୁପାରିବାର, ଧରେ ଯଥା ଜଳ ସହ ତୁଷାର । ୧୭

ସ୍ମରଣ ସ୍ଖଳିଲଲସା ପ୍ରବଳେ, ଜଳି ଉଠିଲା ବେନି ହୃଦସ୍ଥଳେ,
କମ୍ପିତ ଶୀତ ଉଜାଲା ଶରୀର, କଣ୍ଠ ବିଭଙ୍ଗ ହୋଇଲା ଗିର,
ହେଲା ଲୋମାଞ୍ଚିତ, ହେଲେ ଟଣାଟଣି ବେନିଙ୍କ ଚିତ୍ତ । ୧୮

ସଙ୍ଗତା ସାରନ୍ତେ ରାମ ଶ୍ରୀପତି, ଆସି ଆନନ୍ଦେ ନନ୍ଦ ଯଶୋମତୀ,
ନନ୍ଦ କକ୍ଷରେ ଘେନିଲେ ହଳିଙ୍କି, ଯଶୋଦା କକ୍ଷରେ ବନମାଳିଙ୍କି,
ଘେନି ଆନନ୍ଦରେ, ପ୍ରବେଶ କଲେ ଶୁଦ୍ଧାନ୍ତମଧ୍ୟରେ । ୧୯
ବରଜ-ରମଣୀ ବ୍ରଜ-ନନ୍ଦନେ, ଗଲେ ତାଙ୍କପଛେ ଆନନ୍ଦମନେ,
ସୁତଙ୍କୁ ଯଶୋଦା କୋଳେ ବସାଇ, ନବଣୀ ଶର୍କରା ଦେଲେ ଭୁଞ୍ଜାଇ,
ପାସୋରିଲେ ଦୁଃଖ, ଦେଖି ରାମ ହରି ପୂର୍ଣ୍ଣେନ୍ଦୁମୁଖ । ୨୦
ବ୍ରଜ-କୁମାରେ ପୁଲକିତ ମନେ, ସୁଖାଦ୍ୟ ଭୁଞ୍ଜାଇ ନନ୍ଦ-ନନ୍ଦନେ,
ହସି ଶନୟରେ କହିଲେ ବାଣୀ, ନ ଯିବୁଁ ବ୍ରଜେ ଅଜ ବେଣୁପାଣି,
ହୋଇ ତୁମ୍ଭ ଦାସ, ରହିବୁଁ ଏଠାରେ କରଣ ବାସ । ୨୧
ଦାସ ଦାସୀଗଣ କୃଷ୍ଣ ଅଦେଶେ, ସେବିଲେ ବ୍ରଜବାସିଙ୍କି ବିଶେଷେ,
ଅଣି ଭଣ୍ଡାରୁ ନାନା ଉପଚାର, କରାଇ ତାହାଙ୍କୁ ସ୍ନାନ ଅହାର,
ଅହେ ବୁଧଗଣ ! ମନେ ଚିନ୍ତ ଚିନ୍ତାମଣି ଚରଣ । ୨୨



# ସପ୍ତବିଂଶ ଛାନ୍ଦ

ରାଗ—ପଞ୍ଚମବରାଡ଼ି

## ରାଧାଙ୍କର ପୁନର୍ମିଳନ

ଧରି ରଖୁଆଳ ବେଶ କେଶବ କଲେ ପ୍ରବେଶ ବ୍ରଜବାଳୀ ଗୃହ ବାସପୁରେ, ଧରି ସ୍ମିତ ମୁଖଶଶୀ ମଧୁର ମଧୁର ହସି ବଜାଇଣ ବଂଶୀ ସୁମଧୁରେ, ହେ ବୁଧଜନେ ! ସୁଧାମୟ ନେତ୍ରେ ସୁଧା ଢାଳି, ଯଥା ନୀଳନଭ ପାଶେ ତାରକାବଳୀ ପ୍ରକାଶେ ରାଜିଲେ କେଶବ ପାଶେ ବାଳୀ, ହେ ବୁଧଜନେ ! ୧

ଶ୍ରୀମତୀକି ଘେନି ସଙ୍ଗେ ସଖୀଗଣ ଗତିରଙ୍ଗେ ଅସୁଛନ୍ତି ମଣ୍ଡି ପୁରପଥ, ସୁରଙ୍ଗଅଙ୍ଗୁ ଉପରେ ହେମକାନ୍ତି ଶୋଭା କରେ ଚଳପଦ୍ମେ ରବିକର ବତ, ହେ ବୁଧଜନେ ! ଏ ତୁଳନା ଊଣା ତ କଛରେ, ଅବା ଅନୁପମାଧାର ତନୁପୁରଶୋଭାସାର ଧରି ଧୀରେ ଅବନୀରେ ଚରେ, ହେ ବୁଧଜନେ ! ୨

ମଦନମୋହନ ଶତ ଯା ରୂପରେ ବିମୋହିତ ଅତୁଳିତ ଯା ରୂପ ଭୁବନେ, ଯା ଲାବଣ୍ୟଛଟା ଧେନ ରମଣୀସ୍ୱ ଲୋଚନେ ତାର ଶୋଭା କେମନ୍ତେ ବାଚନେ, ହେ ବୁଧଜନେ ! ଶକିବ ଏ ମାନବ-ରସନା, କବି ଚାତୁରୀ ନିକର ବଢ଼ାଇ କଳ୍ପନା-କର ଲେଡ଼ନ୍ତ ସେ ରୂପର ତୁଳନା, ହେ ବୁଧଜନେ ! ୩

କୃଷ୍ଣଠାରୁ ରହି ଦୂରେ ରାଧା ବଦନ-ବିଧୂରେ ପରକାଶି ଲାଜ ହେଲେ ଛୁଡ଼ା, ଛୁଡ଼ା ହେଲେ ସଖି କହି, "ଏ କିସ ଗୋ ପ୍ରାଣସହି ! ନବବଧୂ ପରି କପାଁ ବ୍ରୀଡ଼ା, ଗୋ ବ୍ରଜେଶ୍ୱରି ! ଦେଖ ତବ ବୃନ୍ଦାବନ-ଶଶୀ, ଅଜ ବୃନ୍ଦାବନଶୋଭା ପ୍ରାଣମନନ୍ଦନଲୋଭା ପରକାଶ ତାଙ୍କ ବାମେ ବସି, ଗୋ ବ୍ରଜେଶ୍ୱରି !" ୪

ଯାଇ ଧୀରେ ରାଧା ପାଶେ ମନ୍ଦ ମଧୁମୟ ହାସେ କହିଲେ କମଳ-ପଦ୍ମ-ନେତ୍ର, "ପ୍ରେମବତି ! କ୍ଷମ ଦୋଷ ନ ରଖ ମାନସେ ରୋଷ ଗୃହି ବାରେ ତାଳ ସୁଧା-ନେତ୍ର, ଗୋ ଜୀବେଶ୍ୱରି ! ଏ ସଂସାର ଚଳେ ଦୈବବଶେ, କରବର ବିଧିବଶେ ହେଲେ ବନ୍ଧୁ ନରବାସେ ନ ରହେ କି ବନ ତା ମାନସେ, ଗୋ ଜୀବେଶ୍ୱରି ! ୫

ତବ ଅନୁପମାନନ ଦେଖିବାକୁ ମୋ ନୟନ ବସ୍ତ୍ରନେ ! ସତତ ଅଧୀର, ସତତ ଅଧୀର ଶ୍ରୁତି ସତତ ଅଧୀର ମତ ଶୁଣିବାକୁ ବୀଣା ଜଣା ଗିର, ଗୋ ଜୀବେଶ୍ୱରି ! ନ କର ବଦନ ଧରଣୀକି, ବନ୍ଧୁ ! ଟେକ ଟେକ ମୁଖ ନାଶ ମୋ ବିରହ ଦୁଃଖ ତାଳି କଣ୍ଠେ ସପ୍ରେମ ବାଣୀକି, ଗୋ ପ୍ରେମମୟି !" ୬

ରାଧା ଚିବୁକରେ ପାଣି ରଖି ପୁଣି ବେଣୁପାଣି ଅନ୍ୟକରେ ଧରି ରାଧା କର, ଟେକି ରାଧା ମୁଖ-ଇନ୍ଦୁ ପ୍ରେମଭରେ ପ୍ରେମ-ସିନ୍ଧୁ ଭାଷିଲେ, "ମୋ ଦୋଷ କ୍ଷମାକର, ଗୋ କ୍ଷମାଶୀଳେ ! ଅଟ ପରା ମୋ ହୃଦୟେଶ୍ୱରୀ, ଦେଖ ବିରହ-ଅନଳ ହୃଦୟେ ଜଳେ ପ୍ରବଳ ଦୟା ଶାନ୍ତ ପ୍ରେମ ବୃଷ୍ଟି କର, ଗୋ ଜୀବେଶ୍ୱରି !" ୭

କେଶବ ସ୍ମରଣପାଇ ଦ୍ରବ ଦ୍ରବ ହେଲା ରାଈ ଯେସନେ ତୁଷାର ତପାକାଳେ, ଗୁହିଁଲ ଧୀରେ ଅପାଙ୍ଗେ ଢାଳନ୍ତି ଅଙ୍ଗ ଶ୍ୟାମାଙ୍ଗେ ସ୍ୱଜାଲା କି ନବୀନ ତମାଳେ, ହେ ସଦୁଜନେ ! ମଧୁ ପ୍ରମୋଦନୀ ହେମଲତା, କିବା ନୀଳନଭେ ଚଳ ସୌଦାମିନୀ-ଜଳ କୂଳ ଅବା ଘନେ ସ୍ଥିର ସଦୁଲ୍ଲତା, ହେ ସଦୁଜନେ ! ୮

ରାଧା ତନୁ ଲୋମୋଦ୍ଗମ ଧରି ହେଲା ନୀପସମ ପ୍ରକାଶିତ ହେଲା ସ୍ୱେଦବିନ୍ଦୁ, ତା ନଳିନ ନେତ୍ରଦ୍ୱୟ ହେଲା ସୁଖ-ଅଶ୍ରୁମୟ ଶୋଭେ ଯଥା ପଦ୍ମେ ହିମବିନ୍ଦୁ, ହେ ସଦୁଜନେ ! ସ୍ତମ୍ଭ କ୍ଷଣେ ଘୋଟିଲା ମାନସେ, ଘନ ଘନ ଦୃଷ୍ଟି ଢାଳି ନିରେଖିଲା ବ୍ରଜବାଳୀ ଶ୍ୟାମ ମୁଖ-ଶଶୀ ସୁଖ ବଶେ, ହେ ସଦୁଜନେ ! ୯

ଲତାକୁ ଯଥା ମଳୟ-ସମୀର କରେ ଅଥୟ ତଥା ରାଧା କମ୍ପେ ଧୀର ଧୀର, ଧରି ହରି କର କରେ ହାସ ପ୍ରକାଶେ ଅଧରେ କହିଲା କୋମଳ ଭଙ୍ଗିର, ହେ ବୁଧଜନେ ! "ପ୍ରଭୁ କ୍ଷମା ମାଗେ କି ଦାସୀକି ? ନ କହ ଏ ଅବଧିକି ଦଅ କ୍ଷମା ଅଧୀନୀକି ଦଅ କ୍ଷମା ବରଜବାସିଙ୍କି, ହେ ଜୀବେଶ୍ୱର !" ୧୦

କୃଷ୍ଣ କହନ୍ତି, "ଅବଧି ନ କହେଁ ମୁଁ ରସନିଧି ! ତୁମ୍ଭେ ପରା ବୃନ୍ଦାବନେଶ୍ୱରୀ, ମୁହିଁ ଦୀନ ପ୍ରଜା ତହିଁ ଏ କଥାକୁ ପ୍ରାଣସହି ! ବୋଲି କିପାଁ ଯାଚଛ ପାସୋରି, ଗୋ ଜୀବେଶ୍ୱରୀ ! ଏଥିରେ ତ ସାକ୍ଷୀ ଅଷ୍ଟସଖୀ," ଶୁଣି କହନ୍ତି ଶ୍ରୀମତୀ, "ଏବେ ଯେ ପଦେ ଶ୍ରୀପତି ! ବସିଛନ୍ତି କୁବୁଜା ସୁମୁଖୀ, ହେ ଜୀବେଶ୍ୱର !" ୧୧

ଲଜ୍ଜାନତ ମୁଖେ ହରି କହିଲେ, "ଗୋ ବିଧୁବଦନି ! ତୋଷା ମନୋହର କଳାକର, କୁମୁଦ ବାନ୍ଧବ ନାମେ ବିଖ୍ୟାତ ଯେ ଧରାଧାମେ ତାଙ୍କ ଚର୍ଚ୍ଚା କରଇ କି ପର, ଗୋ ଜୀବେଶ୍ୱରୀ ! ତେଜି ଅଜ ମାନ ମାନସରୁ, ଲୌହସୂତ ସଧିବଳେ ଅନାଦରେ ମୁଗ ଢାଳେ ସଦା ତାର ମୁଖଦଗ ମେରୁ, ଗୋ ଜୀବେଶ୍ୱରୀ !" ୧୨

କହନ୍ତି ଗୋପିନୀବର, "ମୁଁ କିବ ନାହିଁ ତ ପର କିନ୍ତୁ ପର ହୋଇଅଛୁ ସିନା, ତାରକାଙ୍କ ଚନ୍ଦ୍ର ଏକ ଚନ୍ଦ୍ରକୁ ତାରା ଅନେକ ସେ କି ଦୁଃଖୀ ଏକ ତାରା ବିନା, ହେ ଜୀବେଶ୍ୱର ! କରୁଛି ମୁଁ ଏତିକି କାମନା, ହୋଇ ନିତ୍ୟ ସହଚରୀ ସେବିବି ସେବିକା ପରି ପୂର୍ଣ୍ଣ କର ମୋର ଏ ବାସନା, ହେ ଜୀବେଶ୍ୱର ! ୧୩

ପାଦପଦ୍ମ ବଂଶୀଧର ଅଭି ନ କର ଅନ୍ତର ଏ ଦାସୀର ଦୋଷ କ୍ଷମା କରି, ଆଉ ନ ପାରିବି ମୁହିଁ ବିଚ୍ଛେଦର ଦାଉ ସହି ରହିବି ସମୀପେ ଛାୟା ପରି, ହେ ଜୀବେଶ୍ୱର ! ଏହି ମୋର ଏକାନ୍ତ କାମନା, ପଛକେ ପ୍ରେମାଧିକାର ଅନ୍ୟଜନେ ଦାନ କର ନାହିଁ ମୋର ତହିଁରେ ଭାବନା, ହେ ଜୀବେଶ୍ୱର !" ୧୪

ଧରି ଶ୍ରୀମତୀର କର ଯାଇ ଧୀରେ ବଂଶୀଧର ରତ୍ନାସନେ ବସିଲେ ସୁହାସେ, ବିଶାଖାଦି ସହଚରୀ ଅଳଙ୍କାର ଗୃହର ଧରି ବିରାଜିଲେ ରାଧା ଶ୍ୟାମ ପାଶେ, ହେ ବୁଧଜନ ! ଅଷ୍ଟ-ଶକ୍ତି ଦ୍ୱନ୍ଦ୍ୱ ସନ୍ନିଧାନେ, କ୍ଷମା ପ୍ରୀତି ଧୃତି ମତି ଦୟା ଶ୍ରଦ୍ଧା ଶାନ୍ତି ଭକ୍ତି ରାଜନ୍ତି କି ନିତ୍ୟ-ବୃନ୍ଦାବନେ, ହେ ବୁଧଜନେ ! ୧୫

ବେଣୁକର ବାହୁପାଶେ ରାଜିଲେ ବେନି ଉଲ୍ଲାସେ ଦିଅଦୋଇ ହେଲେ ମୁଗ୍ଧ ମଧୁ, କିବା ଜଣା ଅପଗମେ ମିଳିଲେ ସୁଖ-ସଙ୍ଗମେ ଚକ୍ରବାକ ଚକ୍ରବାକବଧୂ, ହେ ବୁଧଜନେ ! ହେଲେ ମଗ୍ନ ସୁଖ-ସମ୍ଭୋଗଣେ, ଲିଭିଲା ବିରହାନଳ ଲିଭିଲା କି ଦାବାନଳ ଗହଳ ଥଳିଳ ବରଷଣେ, ହେ ବୁଧଜନେ ! ୧୬

ଜନେ ମିଳନମାଧୁରୀ ଦେଖି ସୁଖେ ନେତ୍ର ଭରି ଯେ ମିଳନ ବିଶେଷ ଅନୁପମ, ବିଶ୍ୱ ନିଯୁତ ନିଯୁତ ଯେଉଁ ମିଳନଁ ସମ୍ଭୂତ ସେ ମିଳନ ବିଶ୍ୱସ୍ଥିତି-ଧାମ, ହେ ବୁଧଜନେ ! ନିରେଖି ସେ ମିଳନ ନୟନେ, ବର୍ଣ୍ଣି କି ପାରିବ କବି ସେ ମିଳନ ରମ୍ୟଛବି କଳ୍ପି କଳ୍ପି କଳ୍ପି ଶତ ଯତନେ ? ହେ ବୁଧଜନେ ! ୧୭

ଅଜ ଦ୍ୱାରକାଭୁବନ ହୋଇ ନବ-ବୃନ୍ଦାବନ ଭାସେ ନବ ଲାବଣ୍ୟ-ତରଙ୍ଗେ, ପୁଲକ ନୀପକୋରକ ପ୍ରେମାଶ୍ରୁ ଯମୁନୋଦକ ପ୍ରକଟିତ ହେଲେ ନବରଙ୍ଗେ, ହେ ବୁଧଜନେ ! ସଖୀଙ୍କର ଗୀତ ପିକକଳ, ଗୋପୀ-ବଦନ-କୁସୁମ ଫୁଟି ଦଶେ ମନୋରମ ଚଳେ ଶ୍ୱାସରେଣୁ ମଳୟାନଳ, ହେ ବୁଧଜନେ ! ୧୮

ଫେଡ଼ଣି ଜ୍ଞାନ-ନୟନ କର ବୁଧେ ଦରଶନ ପ୍ରତି ପଦାର୍ଥରେ ଏ ଜଗତେ, ନିର୍ଗୁଣମୟୀ ଶ୍ରୀମତୀ ଶ୍ରୀପରସେ ରସିଛନ୍ତି ଯେଣୁ ସଙ୍ଗେ ଶ୍ୟାମଙ୍କୁ ଗୁପତେ, ହେ ବୁଧଜନେ ! ଏ ବତ୍ୱେଗୀତ ହେଲା ଶେଷ, ନିରତେ କର ସ୍ମରଣ ଶ୍ରୀଚିନ୍ତାମଣି ଚରଣ ନ ହେବ ଯିବାକୁ ପ୍ରେତ-ଦେଶ, ହେ ବୁଧଜନେ ! ୧୯



## ଅଷ୍ଟାବିଂଶ ଛାନ୍ଦ

### ଜୟଜୟନ୍ତୀ– ବୃତ୍ତ

### ସଖୀମାନଙ୍କର ନିବେଦନ

ପ୍ରଫୁଲ୍ଲନୟନ ତାଳି ଅଳୀ ଫୁଟିଲ ବଦନେ,
କହିଲେ ଆନନ୍ଦେ ଭାସି ଶ୍ୟାମଙ୍କୁ ସୁଧାବଚନେ । ୧
"ତବ ନବକଶୋଭିକା ଦେଲୁଁ ତବ କରେ ଅଣି,
ହେଲୁଁ ପୂର୍ଣ୍ଣକାମ ଶ୍ୟାମ ! ଦିଅ ଆମ୍ଭଙ୍କୁ ମେଲାଣି । ୨
ତମାଳ ଡାଳରେ ହେଲା ହେମଲତା ସମ୍ମିଳନ,
ଏବେ ଅବଲମ୍ବନରେ ନାହିଁ କିଛି ପ୍ରୟୋଜନ । ୩
ରଖାନ୍ତୁ ବରହେ ରାଧା ପ୍ରାଣ ଯତନେ ଅପାର ।
ତେଣୁ ତ ଆମ୍ଭର ଅଛି ପୁରୀଆରେ ଅଧିକାର । ୪
ମାଗୁଛୁଁ ଏତକ ମାତ୍ର ଦୀନ ଭିକ୍ଷୁକ ବଚନେ,
ନ ଦହ ଏ ହେମାଙ୍ଗୀଙ୍କ ପୁଣି ବିରହ-ଦହନେ ।" ୫

କହିଲେ କେଶବ ହସି, "ହେମ ଝଲିବ ଅନଳେ,"
ଉତ୍ତରିଲା ଦୂତୀ, "ଅତି ଉତ୍ତାପେ କନକ ଗଳେ । ୬
କେବଳ କି ଅନଳରେ ଦୋଷ ହୁଏ ହେମରଙ୍ଗ,
ରସାଣ ସଙ୍ଗରେ ଯଦି ନ ହୁଏ ହେମର ସଙ୍ଗ ? ୭
ଯେ ଅଟେ ଆଶ୍ରିତ ଯାର ତାକୁ ଲାଗେ ତା ବେଦନା,
ଅମ୍ଭର କହିବା ଶ୍ୟାମ ! ଅଟଇ ଅଧିକ ସିନା । ୮
ଦେଖ ତା କନକଜିତ-କାନ୍ତି ହୋଇଛି ମଳିନ,
ବଳିନ ଅଙ୍ଗଯଷ୍ଟିରେ ଗଣ୍ଠି ଶିରା ଦରଶନ । ୯
ବିରହ ଦିନରୁ ସେ ତ ଦିନେ ବାନ୍ଧି ନାହିଁ କେଶ,
କଷ୍ଟର ପର କର ପରିହରିଛି ସେ ବେଶ । ୧୦
ସରଗେ ତାମ୍ବୁଳରାଗେ ସେ ତ ରଞ୍ଜି ନାହିଁ ଅଧରେ,
ପ୍ରବାଳଲତା-ପ୍ରବାଳରାଗ-ଗଞ୍ଜନ ଅଧରେ । ୧୧

ସେ ଅଞ୍ଜନ ରଞ୍ଜି ନାହିଁ କଞ୍ଜ-ଗଞ୍ଜନ-ନୟନେ,
କରିଛି ସିନ୍ଦୂର ଦୂର ଦୁରନ୍ତ କଷ୍ଟ ଯେସନେ । ୧୨
ପିନ୍ଧି ନାହିଁ ନୀଳଚେଳ ସଙ୍କଳିତ ଜମ୍ବୁନଦେ,
ଘେନି ନାହିଁ ବଧିରଜ ମଳୟଜ ମୃଗମଦେ ।"୧୩
କହିଲେ କୋମଳେ ହରି, "ଶୁଣ ଆଗୋ ପିକକଣ୍ଠି !
ଦୀନ ହୃତଧନ ପାଇ ରଖେ ଦେଇ ଶତଗଣ୍ଠି ।" ୧୪
କହିଲା ଶ୍ୟାମଙ୍କୁ ଦୂତୀ, "ଏ କଥା ରଖ ମନରେ,
ଉପବାସୀ ଯେଉଁ ଜନ ନ ଭୁଞ୍ଜେ ସେ ବେଳା କରେ ।"୧୫
ଶ୍ରୀମତୀଙ୍କ ଗୃହୁଁ ପୁଣି ହସିଣ କହିଲା ବାଣୀ,
"ପ୍ରାଣଧନ ସହ ରହ ଶ୍ୟାମ-ପ୍ରେମ-ବାତୁଳାଣି !"୧୬
ଅଳପ ହସିଣ ରାଧା କହିଲେ ନ ଯାଅ ସଖି !
ରମଣୀ-ଘାତକଜନ କରପୁଟେ ମୋତେ ରଖି ।"୧୭
କହିଲା ଦୂତୀ, "ନ ଭାଳ ପୂତନାଦଶା ମନରେ,
ଦାରୁଭେଦନ ଭ୍ରମର ବନ୍ଧ କମଳକୋଳରେ ।" ୧୮

କହିଲେ ଶ୍ରୀମତୀ ପୁଣି ରଞ୍ଜି ଅଧର ସୁହାସେ,
"ନ ଯା ସଖି ! ମୋତେ ରଖି କାଳିଆ ନାଗର ପାଶେ !"୧୯
ଉତ୍ତରିଲେ ସଖୀ, "ସଧେ ନ କର ଗୋ ମନେ ତ୍ରାସ,
ଯାଉଛୁଁ ଗୋ ରଖି ତୋତେ କାଳିଆ ନାଗର ପାଶ । ୨୦
ଏ ତ ନୁହନ୍ତି କାଳିୟ ନୁହନ୍ତି ଏ ଅନାଗର,
ନ ଜାଣୁ କି କାଳିୟକୁ କରିଛନ୍ତି ଏ ଅଗର । ୨୧
ତୋ ନୟନ ତୋ ଅଧର ଅଟନ୍ତି ଅମୃତ-ନଦୀ,
କାଳିଆ ନାଗରେ ତୋର କି ଭୟ କରକରଧ !"୨୨
ଏମନ୍ତ ଭାଷିଣ ଆଳୀ ହେଲେ ପାଶରୁ ଅନ୍ତର,
ଶ୍ରୀଚନ୍ଦ୍ରାମଣି ଚରଣ ବୁଧେ ! ଭଜ ନିରନ୍ତର । ୨୩



## ଊନତ୍ରିଂଶ ଛାନ୍ଦ

ରାଗ—ଘଣ୍ଟାରବ *

### ନବ ରାସ ବର୍ଣ୍ଣନ

ଗୋପୀଙ୍କ ମାନସ ଜାଣି, ଭକ୍ତପ୍ରିୟ ବଂଶୀପାଣି,
ମନ୍ଦ ମନ୍ଦ ହସି ଅମିୟ ବରଷି ପ୍ରକାଶିଲେ ସୁଧାବାଣୀ । ୧
ବ୍ରଜାଙ୍ଗନା ମୁଖ ଚୁହିଁ, କହିଲେକ ଭାବଗ୍ରାହୀ,
"ଯେବେ ବୃନ୍ଦାବନ କରିଛୁ ବର୍ଜ୍ଜନ ରାସରସେ ରସି ନାହିଁ । ୨
ଆସ ମୋ ରାସସଙ୍ଗିନୀ । ରାସ-ରସ-ତରଙ୍ଗିଣି !
ହୋଇ କୃପାବଶ ରାସରସେ ରସ ଗିରଣ-ଯୋଗ-ଭଙ୍ଗିନୀ !" ୩
ଗୋପୀ ହୋଇଣ ସମ୍ମତ, ରାସେ ହେଲେ ସମୁଦ୍ୟତ.
ପିନ୍ଧିଲେ ବସନ ନର୍ତ୍ତକୀ ଯେସନ କଟିରେ ଭିଡ଼ି ପଣନ୍ତ । ୪

---

* "ବକୁଷା କଣ୍ଠା ମୁକୁଟ" ବୈ, ବ

ହୋଇ କର ଧରାଧରି, ମଣ୍ଡଳାକାରେ ସୁନ୍ଦରୀ,
ହେଲେ ପୂରି ପୂରି ମଧ୍ୟରେ କିଶୋର କିଶୋରୀଙ୍କି ଘେରି କରି । ୫

ପଦ୍ମକେଶର ଚୌକତ ଯଥା ଶୋଭା ପ୍ରକାଶନ୍ତ,
ଅତି ଶୋଭାମୟ ରମ୍ୟଦଳଚୟ ଦେଇ ନୟନେ ତୃପତ । ୬

ଅବା ଶଶୁଅମ୍ବା ହରି, ଅଦ୍ୟାଶକ୍ତିରେ ବହରି,
ଶଶ-ଗ୍ରୋପ୍ତୀ ଶକ୍ତିଚୟରେ ଶୋଭନ୍ତ ଗୋଲୋକକୁ ପୂର୍ଣ୍ଣ କରି । ୭

ହରି ଛନ୍ଦେ ହୋଇ ଜଗ୍ରା, ଘେନି ସଙ୍ଗେ ଶଶୁଶୋଭା,
ମୁରଳୀ ଅଧରେ ଲଗାଇ ସୁସ୍ୱରେ କଲେ ଧ୍ୱନି ଶ୍ରୁତିଲୋଭା । ୮

ତାଳେ ତାଳେ ବଂଶୀତାନେ, ପାଦ ଗୃଳି ଗୋପୀମାନେ,
ଚକ୍ରାକାରେ ରହି ଧୀର ଧୀର ହୋଇ ଚଳିଲେ ମଞ୍ଜୁଳ ଗାନେ । ୯

ଏକ ଲୟେ ଏକ ସ୍ୱରେ, ଗୋପୀଏ ସୁଧାକଣ୍ଠରେ,
କୃଷ୍ଣ ଗୁଣମାନ କଲେ ସୁଖେ ଗାନ ଅତ୍ୟନ୍ତ ଆନନ୍ଦଭରେ । ୧୦

ବଂଶୀତାନେ ଗୋପୀଗାନେ, ମିଳିଲେ ଭୂଷଣମାନେ,
ମଞ୍ଜୀର ନୂପୁର କିଙ୍କିଣୀ କେୟୂର ରତ ହେଲେ ତାଳଦାନେ । ୧୧

ବାମକୁ କେଉଁ ମଣ୍ଡଳୀ, କେ ମଣ୍ଡଳୀ ଦକ୍ଷେ ଚଳି,
ନାନା ହାବଭାବେ ନୃତ୍ୟ କଲେ ସର୍ବେ ପୂରି ନବ-ରାସସ୍ଥଳୀ । ୧୨

ଚୌଦିଗେ ସମ୍ମୁଖ ଗୃଳି, ନାନା ଭଙ୍ଗେ ବନମାଳୀ,
ନାଚିଲେ ମଧୁର ଧରି ରାଧା କର ଗୋପୀ ଦେଲେ କରତାଳି । ୧୩

ନାଚିଲ ମୋହନଚୂଡ଼ା, ବନମାଳ ଧୈର୍ଯ୍ୟବୁଡ଼ା,
କକ୍ଷରେ ଦୋହଲି ତାଳେ ତାଳେ ଚଳି ବର୍ଷିଲା ଫୁଲପାଖୁଡ଼ା । ୧୪

ଗୋପୀ ବା ନଳିନୀଚୟ, ଧୀରସମୀରେ ଅଥୟ,
ତେଜି ଖେଳିଖେଳି ପ୍ରେମେ କଲେ କେଳି ହରି ନୟନ ହୃଦୟ । ୧୫

ଉଛୁଳିଲା ରାସରସ, ସିନ୍ଧୁ ଯଥା ପର୍ବବଶ,
କୃଷ୍ଣଙ୍କ ମୁଖରେ ମଜ୍ଜିଲେ ସୁଖରେ ଗୋପୀଙ୍କ ନେତ୍ର ମାନସ । ୧୬

ହେ ଗୋପୀ ବଦନଇନ୍ଦୁ, ସ୍ରାବେ ସ୍ୱେଦ-ସୁଧାବିନ୍ଦୁ,
କେହୁଁ ଗୋପୀ ଚେଳ ହୁଅନ୍ତେ ଶିଥିଳ ନାଚେ ଭଣ୍ଡ ପଂକ୍ତି ପିନ୍ଧି ।୧୭
ଶ୍ଲଥ ହେଉଁ କେଶ-ପାଶ, ଖସି ପଡ଼େ ସୁମନସ,
ଶୋଭି ପରକାଶି ପଡ଼ନ୍ତି କି ଖସି ମୂର୍ତ୍ତିମାନ ପ୍ରେମରସ । ୧୮
ଶ୍ରୁତି ମୂଳରେ ତାଟଙ୍କ, ଦୋଳେ ଗ୍ରୀବା ହେଉଁ ବଙ୍କ,
ନିତମ୍ବ ଉପର ଚଳେ କାଞ୍ଚୀହାର ରମ୍ୟ ଶୋଭା ପ୍ରକାଶକ । ୧୯
କଠିନ ପୀବର କୁଚ, ନିତମ୍ବ ପୃଥୁଳ ଉଚ୍ଚ,
ପରସ୍ପରେ ହାସ୍ୟ କରନ୍ତି ପ୍ରକାଶ ପରସ୍ପରେ କର ତୁଚ୍ଛ । ୨୦
ହୋଇ ପ୍ରେମେ ଅତି ଭୋଳ, ଉନ୍ମତ୍ତ ଗୋପିନୀକୁଳ,
କେ ଦେଲା ଚୁମ୍ବନ କେହୁ ଆଲିଙ୍ଗନ କେ ଦେଲା କୃଷ୍ଣଙ୍କୁ କୋଳ ।୨୧
ବିଶ୍ୱ ସୃଷ୍ଟି ରକ୍ଷା ଲୟ, ଯେଉଁ ଲୀଳାରୁ ଉଦୟ,
ସେ ଲୀଳା ଅଭ୍ୟାସ କଲେକ ପ୍ରକାଶ ମର୍ତ୍ତ୍ୟଧାମେ ଲୀଳାମୟ ।୨୨
ଯୋଗିଙ୍କ ଜ୍ଞାନ-ନୟନ, ଯେ ଲୀଳା କରେ ଦର୍ଶନ,
ନନ୍ଦସୁତରୂପୀ ବିଶ୍ୱବ୍ୟାପିଙ୍କର ସେ ଲୀଳା ଦେଖେ ନୟନ । ୨୩
ଆହେଣ ଅମରମାନେ, ନଭେ ରହିଣ ବିମାନେ,
ରାସେଶ୍ୱର ହରି ରାସର ମାଧୁରୀ ଦେଖି ଭୋଳ ସ୍ତବଗାନେ । ୨୪
କହୁ ପାରିବ କି କବି, ସେ ଲୀଳାର ରମ୍ୟ ଛବି,
ଯାହା ଭକ୍ତନେତ୍ର ଦେଖିପାରେ ମାତ୍ର ଧ୍ୟାୟି ଭକ୍ତ-ବାଞ୍ଛା-ରବି ।୨୫
ଅହେ ଜ୍ଞାନୀ ଯୋଗୀଜନ ! ଫେଡ଼ିଣ ଦିବ୍ୟନୟନ,
ଦେଖ ରାସଲୀଳା ଚିନ୍ତ ଭବ-ହେଳା ଶ୍ରୀଚିନ୍ତାମଣି ଚରଣ । ୨୬



# ତ୍ରିଂଶ ଛାନ୍ଦ

## ରାଗ—ଖଣ୍ଡ ପାହାଡ଼ିଆ କେଦାର

## ଦେବତାମାନଙ୍କର ସ୍ତବ

ଅସି ଗଗନେ ଅମରକୁଳ, ଦେଖିବା ପାଇଁ ହୋଇଲେ ଠୁଳ,
ସୃଜନ ସ୍ଥିତି ପ୍ରଳୟମୂଳ, ଲୀଳା ଅତୁଳ ଯେ,
ମିଳି ସରବ ଗାଇଲେ ସ୍ତବ ଆନନ୍ଦେ ଭୋଳ ଯେ । ୧
ଜୟ ଗୋପାଳଚନ୍ଦ୍ର-ନନ୍ଦନ, ଜୟ ଗୋପିନୀ-ହୃଦ-ଚନ୍ଦନ,
ଜୟ ନିଖିଳ-ବିଶ୍ୱ-ବନ୍ଦନ, ଭବବନ୍ଧନ ଯେ,
ତବ କରୁଣା-କଣା ମାତରେ ଲଭେ ଛେଦନ ଯେ । ୨
ଜୟ ସୁଦାମା-ଦୁଃଖ-ଭଞ୍ଜନ, ଜୟ କାଳିୟ-ଦର୍ପ-ଗଞ୍ଜନ,
ଜୟ ଭକତ-ନେତ୍ର-ଅଞ୍ଜନ, ବିଶ୍ୱରଞ୍ଜନ ଯେ,
ଜଗତ-ଅଳି ତୋ ଗୁଣାବଳୀ କରେ ଗୁଞ୍ଜନ ଯେ । ୩
ଏ ଯେ ଭୁବନ ବେଦିସପତ, ହେଲେ ପ୍ରବଳ ପାପେ ତପତ,
ତୁ ନିଜ ରୂପ କରି ଗୁପତ, ହେଉ ପ୍ରାପତ ଯେ,
ବିବିଧ ରୂପ; ପୁଣି ବ୍ରହ୍ମାଣ୍ଡେ ଥାଉ ବ୍ୟାପତ ଯେ । ୪
ପ୍ରେମ ବାରିଧି ଧୃତରଙ୍ଗରେ, ଖେଳିବା ପାଇଁ ଭକ୍ତ ସଙ୍ଗରେ,
ଜଗତ ହିତ ସ୍ୱରଥାଙ୍ଗରେ, ଲୀଳାରଙ୍ଗରେ ଯେ,
ସାଧିବା ପାଇଁ ହେଉ ବ୍ୟକତ ନାନା ଅଙ୍ଗରେ ଯେ । ୫
ଇନ୍ଦ୍ରିୟାଗୋଚର ତୁ ନିରାକାର, ଜ୍ଞାନଗୋଚର ତୁହି ସାକାର,
ତୁ ଏକରୂପ ନାନା ପ୍ରକାର, ତୁହି ଓଁକାର ଯେ,
ଏ ବିଶ୍ୱ-ବର୍ଣ୍ଣମାଳା ମଧ୍ୟରେ ତୁହି ଅକାର ଯେ । ୬
ସାକାର ଯେତେ ତୋର ଭକତ, ତେଣୁ ସାକାରେ ହୋଇ ବ୍ୟକତ,
ତାହାଙ୍କୁ କରୁ ଭବୁଁ ମୁକତ, ଅତି ଶକତ ଯେ,
ସାକାର ନିରାକାରରେ ହେବା ଅନୁରକତ ଯେ । ୭

ତୋର ମୂରତି ମହା-ଆକାଶ,   ତୋହର ସତ୍ତା ଶୂନ୍ୟସଙ୍କାଶ,
ନ ହେଲେ ରୂପ ଧରି ପ୍ରକାଶ,   ଚିତ୍-ଆକାଶ ଯେ,
ଭକତେ ଧରନ୍ତି   ତୋ ମୂର୍ତ୍ତିଶଶୀ   ପୂର୍ଣ୍ଣବିକାଶ ଯେ । ୮

ଶ୍ରୀମତୀ [illegible] ଆଦରଶକତି,   ଗୋପୀଏ ପ୍ରେମ ପ୍ରୀତି ବ୍ୟକତି,
ଭଜନ୍ତି ସଦା ତୋହର କତି,   ଗୋପୀଭକତି ଯେ,
କାମବର୍ଜିତ   ଦାମ୍ପତିଗତ   ଅନୁରକତି ଯେ । ୯

ନାହିଁ ତୋହର ଶେଷ ସମ୍ଭବ,   ଅଛି ତୋହର ଶେଷ ସମ୍ଭବ,
ତୋର ନିକଟେ ହୁଏ ସମ୍ଭବ,   ଯା ଅସମ୍ଭବ ଯେ,
ଏହା ନ ବୁଝି   କୁତର୍କେ ମଜ୍ଜି   ମୋହିତ ଭବ ଯେ । ୧୦

ଅହା ତୋ ରୂପ କେଡ଼େ ମଧୁର,   ନେତ୍ର-ସମ୍ପତ୍ତି ଗୋପ-ବଧୂର,
ତୋ ମୁଖ ପୂର୍ଣ୍ଣ-ବିଧୁ ବିଧୁର,   ପାତକ ଧୂର ଯେ,
ତୋ ରୂପ ନେବେ   ପଡ଼ିବା ମାତେ   ହୁଅଇ ଦୂର ଯେ । ୧୧

ତ୍ରିଲୋଚନ ତୁ ଚକ୍ରଧର,   ତୁ ହରିହର ଶୂଳାଗ୍ରଧର,
ଆମ୍ଭଙ୍କୁ ମାୟା-ପାଶେଁ ଜଡ଼ର,   ଦୋଷ ନ ଧର ଯେ,
ଆମ୍ଭ ଆଶ୍ରୟ   ହେ ଚିନ୍ତାମଣି !   ଚରଣ ତୋର ଯେ । ୧୨

ଅମରମଣି ଦେବନିକର,   ଆମ୍ଭେ ସକଳ ତୋ ପରିକର,
ରୁକ୍ମିଣୀବର ! କରୁଣା କର,   ପେଷି ଚକର ଯେ,
ନାଶ ଆମ୍ଭର   ସୁଭୟଙ୍କର   ମୋହ-ନ କର ଯେ । ୧୩

ହେ କୃଷ୍ଣପ୍ରିୟେ ! କୃଷ୍ଣଭାମିନି !   ଶ୍ୟାମ-ଘନେ ତୁ ସଉଦାମିନୀ,
ତୁ ସୁଖ-ଦିବା ଦୁଃଖ-ଯାମିନୀ,   ବିଶ୍ୱସ୍ୱାମିନୀ ଯେ,
ତୁ ବ୍ରଜଧାମେ   ରାଧାରୂପିଣୀ   ଗୋପକାମିନୀ ଯେ । ୧୪

ରାସାନ୍ତେ ଗୋପୀ ସୁଖବେଗରେ,   ହୋଇଲେ ଠୁଳ କୃଷ୍ଣ ଅଗରେ,
ଭାସିଣ ସୁଖ-ପ୍ରେମ-ସାଗରେ,   କି ସୁହାଗରେ ଯେ,
କୃଷ୍ଣଙ୍କୁ ଦେଲେ   ଚୁମ୍ବାଲିଙ୍ଗନ   ଅନୁରାଗରେ ଯେ । ୧୫

ନୀଳାଚେନ୍ଦ୍ର ସ୍ତବ ସାର ସୁମନ, ଯେଣ୍ଟା ସଦନେ କଲେ ଗମନ,
ସୁଜନେ ଜମ୍ବୁ କର ଶମନ, ଅର ଦମନ ଯେ,
ଶ୍ରୀଚନ୍ଦ୍ରାମଣି-ଚରଣାମ୍ବୁଜେ ରଖିଣ ମନ ଯେ । ୧୬




କଟକ ଦତ୍ତପ୍ରେସରେ ଶ୍ରୀ ହରମୋହନ ଦତ୍ତଙ୍କ ଦ୍ୱାରା
ମେସିନ୍‌ଯନ୍ତ୍ରେ ମୁଦ୍ରିତ । ୧୯୩୪

